ହିନ୍ଦୁସ୍ଥାନି ଗ୍ରନ୍ଥମାଳା ୧୩ଶ ଖଣ୍ଡ

# ସମର ତରଙ୍ଗ

ପ୍ରଥମ ସଂସ୍କରଣ


ପ୍ରକାଶକ

ସୂର୍ଯ୍ୟନାରାୟଣ ଦାଶ

ହିନ୍ଦୁସ୍ଥାନ ସାହିତ୍ୟ ମନ୍ଦିର

କଟକ

୧୯୪୦




ମୂଲ୍ୟ ୪ ୦ ।

# ମୁଖବନ୍ଧ

ବ୍ରଜନାଥ ବଡ଼ଜେନା ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧର କବି । ସେ ଢେଙ୍କାନାଳ ଅନ୍ତର୍ଗତ ମୁକ୍ତାଦେଈଙ୍କ ଶାସନ ଅଗ୍ରରେ ବାସ କରୁଥିଲେ ।

ମୋର ଘର ଢେଙ୍କାନାଳ ନଗରେ
ମୁକ୍ତାଦେଈଙ୍କ ଶାସନ ଅଗ୍ରରେ । ଗୋପୀବିନୋଦ । ୬ । ୧୯୦ ।

ତାଙ୍କର ବଂଶଧରମାନେ ବର୍ତ୍ତମାନ ପ୍ରସିଦ୍ଧ ଖୋରଧା ଗାଦ ନିକଟସ୍ଥ ମାଧପୁର ଗ୍ରାମରେ ବାସ କରୁ ଅଛନ୍ତି ।

ବ୍ରଜନାଥ ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ ସମସାମୟିକ । ସେ କେଉଁ ବର୍ଷ ଜନ୍ମ ଗ୍ରହଣ କରିଥିଲେ ତାହା ଜଣାଯାଇ ନ ଥିଲେ ମଧ୍ୟ ସେ ଯେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଅର୍ଦ୍ଧରେ ଜୀବିତ ଥିଲେ ଏଥିରେ କୌଣସି ସନ୍ଦେହ ନାହିଁ । ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ଖ୍ରୀ: ୧୭୭୨ ଠାରୁ ୧୭୯୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ୧୭୮୧ ସାଲରେ ଢେଙ୍କାନାଳ ଯୁଦ୍ଧ ହୋଇଥିବାର ଅନୁମାନ ହୁଏ । କବି ସେ ଘଟଣାକୁ ଅବଲମ୍ବନ କରି ସମର ତରଙ୍ଗ ଲେଖିଥିବାରୁ ସେ ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଜୀବିତ ଥିଲେ ବୋଲି କହିବା ସ୍ୱାଭାବିକ ମାତ୍ର ।

ବ୍ରଜନାଥ ବଡ଼ଜେନା ଜାତିରେ ଶିଷ୍ଟ କରଣ । ତାଙ୍କର ପୂର୍ବ-ପୁରୁଷ ରଘୁ ଅରକ୍ଷିତ ପୁରୀରେ ବାସ କରୁଥିଲେ । ରଘୁ ଅରକ୍ଷିତଙ୍କ କେହି ବଂଶଧର ପୁରୀ ଛାଡ଼ି ଢେଙ୍କାନାଳରେ ରହିଥିଲେ । କବି "ଶ୍ୟାମ ରାସୋତ୍ସବ"ରେ ଲେଖିଛନ୍ତି:—

ଶିଷ୍ଟ କରଣ କୁଳରେ ଜନମ ଢେଙ୍କାନାଳରେ
ବାସ କରୁଛି କାହିଁ ହେଲି ବିଷୟୀ ବଶେ
ଶ୍ରୀନୀଳାଦ୍ରି ଥିଲା ବାସ ରଘୁ ଅରକ୍ଷିତ ବଂଶ
ମୁହିଁ ହୋଇଲୁଁ ବିଷ ଜନ୍ମିଲି ଅଂଶେ,

ଶୁଦ୍ଧ କଳାଶ୍ରୀମୁଖ ଚନ୍ଦ୍ର

ଶ୍ୟାମ ସ୍ୱପୋତ୍ସବ ବ୍ରଜନାଥ ବଦନ୍ତ । ୧୦ । ୨୩ ।

'କେଳି କଳାନିଧି" ଗ୍ରନ୍ଥର ୬ଷ୍ଠ ଛାନ୍ଦରେ ସେ ଲେଖିଛନ୍ତିଃ—

ବର୍ଣ୍ଣରେ ଅଟୁ ଅମ୍ଭେ ଶିଷ୍ଟ କରଣ

ରଘୁ ଅରକ୍ଷିତଙ୍କ ବଂଶ ନପୂଣ ଯେ,

× × ×

ଶ୍ରୀକ୍ଷେତ୍ରବରେ ପୂର୍ବେ ନିବାସ ଥିଲା

ବାଧୁ ବଣରେ ସେଠୁ ଅନ୍ତର ହେଲା ଯେ ।

ତହୁଁ କେତେକାଳ ଗଲା ଓଡ଼ିଶାରେ

ଷଷ୍ଠ ପୁରୁଷ ହେଲା ଢେଙ୍କାନାଳରେ ଯେ ।

( "ଶ୍ୟାମସ୍ୱପୋତ୍ସବ ମୁଖବନ୍ଧ । ଢେଙ୍କାନାଳ ସାହିତ୍ୟ ସଂଘ । ପୃ ୩ । )

ବ୍ରଜନାଥଙ୍କ ଛ ପୁରୁଷ ଢେଙ୍କାନାଳରେ ବାସ କରୁଥିଲେ । ଶ୍ରୀ ରାଜକିଶୋର କବିଭୂଷଣ "ଶ୍ୟାମ ସ୍ୱପୋତ୍ସବ" ମୁଖବନ୍ଧରେ କବିଙ୍କର ଯେଉଁ ବଂଶାବଳୀଟି ଦେଇଛନ୍ତି ତାହା ନିମ୍ନରେ ଦିଆଗଲା ।

ରଘୁ ଅରକ୍ଷିତ
|
ବିଶ୍ୱ ଅରକ୍ଷିତ
|
ଶ୍ରୀକୃଷ୍ଣ ମହାପାତ୍ର
|
ତ୍ରିବିକ୍ରମ ପଟ୍ଟନାୟକ
|
ବାଲ୍ମୀକେଶ୍ୱର ପଟ୍ଟନାୟକ
|
ଗୋପୀନାଥ | ଜଗନ୍ନାଥ | ବ୍ରଜନାଥ | ଦୈତାରି

କବିଙ୍କର ବଂଶ ପରିଚୟ ତାଙ୍କ ରଚିତ "ଗୋପୀ ବିଳାପ", "କେଳି କଳାନିଧି", "ସମର ତରଙ୍ଗ"ରେ କିଛି କିଛି ମିଳେ । ବ୍ରଜନାଥ ଗୋପୀ ବିଳାପରେ ଲେଖିଛନ୍ତି:—

ପିତାଙ୍କର ନାମ ବାଲୁକେଶ୍ୱର, ପଟ୍ଟନାୟକ କହିଲେ ନରେଶ୍ୱର ।
ଅଟୁ କରଣ ଯେ ଅମ୍ଭେ ଜାତିରେ, ଗୁରୁ ଭାଇ କବି ନାନା ଜାତିରେ ।
ଜ୍ୟେଷ୍ଠ ଗୋପୀନାଥ ପଟ୍ଟନାୟକ, ଇଷ୍ଟ ତାଙ୍କର ନୀଳାଦ୍ରି ନାୟକ ।
ମଧ୍ୟ ଜଗନ୍ନାଥ ପଟ୍ଟନାୟକ, କବିଭୂଷଣ ପଦ ତ ନାୟକ ।
ସର୍ବ କନିଷ୍ଠ ନାମ ଲୋକନାଥ, ରାଜତରଙ୍ଗ କହିଲେ ନରନାଥ ।
ବ୍ରଜନାଥ ବୋଲିଣ ମୋର ଯେ ନାଁ, ରାଜପଦ ଅଟଇ ବଡ଼ଜେନା ।

ଗୋ. ବି. ୬ଷ୍ଠ ଛ

କବିଙ୍କର ଗୁରୁଭାଇଙ୍କ ପ୍ରତି ସରସ୍ୱତୀ ପ୍ରସନ୍ନ ଥିଲେ ବୋଲି ଜଣାଯାଏ । ବ୍ରଜନାଥ "କେଳି କଳାନିଧି"ରେ ଲେଖିଛନ୍ତି:—

ଅମ୍ଭେ ଗୁରୁହେଁ କବି ନାନା ଜାତିରେ
ସଂସ୍କୃତ ପ୍ରାକୃତ ହୃଦୁସ୍ଥାନରେ ଯେ । ଛ. ୧୬.

ବ୍ରଜନାଥ କବିତା ଲେଖି ବିଭିନ୍ନ ରାଜାମାନଙ୍କୁ ଭେଟି ଦେଉଥିଲେ । ରାଜାମାନେ ତାଙ୍କର କବିପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ବହୁତ ଉପହାର ଦେଉଥିଲେ ।

ବହୁତ ପୃଥ୍ୱୀମାନ ଦେଖିଛି ମୁହିଁ, କେତେମାନଙ୍କୁ ଭେଟି ମୁଁ ଅଛି ତହିଁ,
ଅନେକରୂପେ ମୋତେ କରନ୍ତି ଦାନ, ତଥାପି ସେ କି ମୋର ପ୍ରଭୁ ସମାନ

ସ. ତ. ୭ମ ଛ ୨୪ ପ

ସେ କବିତା ଲେଖିବା ଛଡ଼ା ଅନ୍ୟାନ୍ୟ କାରୁକାର୍ଯ୍ୟରେ ମଧ୍ୟ ଦକ୍ଷ ଥିଲେ । "ସମର ତରଙ୍ଗ"ରେ ସେ ଲେଖିଛନ୍ତି :—

ଛନ୍ଦ କଳମେ ପୁଣ କରିଛି ଶ୍ରମ, ତାଳପତ୍ର କାଗଜ ଅକ୍ଷର କ୍ରମ ଯେ ।
ରୂପ ଚିତ୍ରରେ ନାନା ପଠପୁସ୍ତକ, ତାହା ଦେଖି ଆନନ୍ଦ ହୁଅନ୍ତି ଲୋକ ।

୭ମ ଛ

।

ବ୍ରଜନାଥଙ୍କ ଅଷ୍ଟରଙ୍କମ କୌଶଳରେ ମୁଗ୍‌ଧ ହୋଇ ପୁଣ୍ଟର ତଦାନୀନ୍ତନ ରାଜା ତାଙ୍କୁ "ବଡ଼ଜେନା" ଉପାଧି ଦେଇଥିବାର ଶୁଣାଯାଏ ।

କବି କେଉଁବର୍ଷ ଇହଲୀଳା ଶେଷ କଲେ ତାହା ଜାଣିବାପାଇଁ କୌଣସି ପ୍ରମାଣ ମିଳି ନାହିଁ । ସେ ନିଜେ ମହୀନ୍ଦ୍ର ବାହାଦୁରଙ୍କ ଆଶ୍ରୟରେ ଅନେକ ସମୟ କଟାଇଥିବାର ସେ ନିଜେ ଗ୍ରନ୍ଥମାନଙ୍କରେ ଲେଖିଛନ୍ତି । ଏହାଛଡ଼ା ତାଙ୍କ ଜୀବନର ଅନ୍ୟ କୌଣସି ବିଶିଷ୍ଟ ଘଟଣା ଆଜପର୍ଯ୍ୟନ୍ତ ଜଣାପଡ଼ିନାହିଁ ।

ବ୍ରଜଜେନାଙ୍କ ପାଣ୍ଡିତ୍ୟ—

ବ୍ରଜନାଥଙ୍କ ବଂଶ ଶିକ୍ଷିତ ଥିବାରୁ ତାଙ୍କର ସବୁ ଭାଇ ନାନା ଢଙ୍ଗରେ ସାହିତ୍ୟସେବା କରିପାରିଥିଲେ । ନିଜେ ବ୍ରଜନାଥ ସଂସ୍କୃତ, ଓଡ଼ିଆ, ହିନ୍ଦୁସ୍ଥାନୀରେ କବିତା ଲେଖିଥିବାର ସେ କହିଛନ୍ତି:—

ସଂସ୍କୃତ ପ୍ରାକୃତ ଗୋଛନ୍ଦେ ବୋଲି, ନାନାଭାଷାରେ ଗୀତ କବିତା କଲି ।

ସ, ତ, ୭ମ ଛା, ୧୮ ପ

କବିଙ୍କର ସବୁ ଗ୍ରନ୍ଥର ନାମ ମିଳି ନ ଥିଲେ ମଧ୍ୟ ଯେଉଁ ଗ୍ରନ୍ଥଗୁଡ଼ିକ ପ୍ରକାଶିତ ହୋଇଛି ସେଥିରୁ ତାଙ୍କର ପାଣ୍ଡିତ୍ୟର ଯଥେଷ୍ଟ ପ୍ରମାଣ ମିଳେ । "ଗୁଣ୍ଡିଚାବିଜେ" ଗ୍ରନ୍ଥରେ ତାଙ୍କର ଖୋରଠା ଭାଷାରେ ବିଶେଷ ବ୍ୟୁତ୍ପତ୍ତି ଥିବାର ପ୍ରମାଣ ମିଳେ । "ଶ୍ୟାମ ରାସୋତ୍ସବ"ରେ ବୈଷ୍ଣବ ଧର୍ମର ପ୍ରାମାଣିକ ଗ୍ରନ୍ଥମାନଙ୍କର ଛାୟା ପଡ଼ିଥିବାର ଦେଖାଯାଏ । ତା ଛଡ଼ା ଅଲଙ୍କାର ଶାସ୍ତ୍ରରେ ମଧ୍ୟ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା । ବିଭିନ୍ନ ଅଲଙ୍କାରର ଅବତାରଣା ତାର ପ୍ରମାଣ । ଓଡ଼ିଆ ସାହିତ୍ୟ ଉପରେ ତାଙ୍କର ଯେ ବହୁତ ଦଖଲ ଥିଲା ତାହା "ଶ୍ୟାମ ରାସୋତ୍ସବ" ଗ୍ରନ୍ଥ ପଢ଼ିଲେ ଜଣାପଡ଼େ । ଏତେବଡ଼ ଗ୍ରନ୍ଥଟିକୁ ସେ "ଶ" ଅକ୍ଷର ନିୟମରେ

ଲେଖିଛନ୍ତି । ତା ଛଡ଼ା ସମର ତରଙ୍ଗ ସେ ଯେଉଁ ଢଙ୍ଗରେ ଲେଖିଛନ୍ତି ତାହା ପଢ଼ିଲେ ଜଣାଯାଏ ସତେ ଯେପରି ଖାଣ୍ଟି ଓଡ଼ିଆ ଭାଷାଟା ତାଙ୍କର ଚରଣ ତଳେ କଙ୍କର ହୋଇପଡ଼ିଛି । କି ଅଳଙ୍କାରିକ ଭାଷା, କି ସରଳ ଭାଷା, ସବୁଥିରେ ସେ ଦକ୍ଷତା ସହିତ ହାତ ଚଳେଇ ପାରିଥିବାର ଜ୍ୱଳନ୍ତ ପ୍ରମାଣ ତାଙ୍କର ଗ୍ରନ୍ଥମାନଙ୍କରୁ ମିଳେ ।

**ତାଙ୍କ ରଚନା—**

ବ୍ରଜନାଥଙ୍କର ପ୍ରକାଶିତ ଗ୍ରନ୍ଥମାନଙ୍କ ଭିତରେ ବର୍ତ୍ତମାନ ମିଳୁଛି— "ସମର ତରଙ୍ଗ" "ଗୋପୀ ବିଳାପ" "ଗୁଣ୍ଡିଗୃହକେଳି" "ଚତୁରବିନୋଦ" "ଶ୍ୟାମ ରାସୋତ୍ସବ" । "ଅମ୍ବିକା ବିଳାସ" ମଧ୍ୟ ଏ କବିଙ୍କର ଲେଖା ବୋଲି କେହି କେହି କହନ୍ତି । ଅପ୍ରକାଶିତ ଗ୍ରନ୍ଥମାନଙ୍କ ମଧ୍ୟରେ କେଳିକଳାନିଧି, ଚଣ୍ଡିମାଳଶ୍ରୀ, ରାଜସଭା, ଛଳୋକ୍ତି କୌଣସି କୌଣସି ଠାରେ ମିଳୁଥିବାର ଶୁଣାଯାଏ । କବିଙ୍କର ସଂସ୍କୃତ ରଚନା ସମ୍ବନ୍ଧରେ କିଛି ଜଣାଯାଇ ନାହିଁ । ଏହି ଗ୍ରନ୍ଥମାନଙ୍କ ଛଡ଼ା ସେ ଅନେକ ଛାନ୍ଦ ଓ ଚଉତିଶା ମଧ୍ୟ ରଚନା କରିଥିଲେ । ତାଙ୍କର ରଚନାମାନଙ୍କର ଏକ ସଂକ୍ଷିପ୍ତ ସୂଚନା ସେ ସମର ତରଙ୍ଗରେ ଦେଇଛନ୍ତି ।

ସଂସ୍କୃତ ପ୍ରାକୃତ ଗୋଛନ୍ଦେ ବୋଲି, ନାନା ଭାଷାରେ ଗୀତ କବିତା କଲି
ବିବିଧ ଚଉପଦୀ ଚଉତିଶା ହିଁ, ବୋଲି ଛାନ୍ଦ ପ୍ରବନ୍ଧ ବୋଲନ୍ତି ମୁହିଁ ହେ,
ସକାର ଛାନ୍ଦ ମାନ କୃତ ଚୂର୍ଣ୍ଣିକ, କଥା ବର୍ଣ୍ଣନା ନାନାଦି କୌତୁକ ହେ,
ତଗ ତମାଳ ଆଦି ଗୃଳକ ଗୀତ, ବ୍ରଜମୋହନ କେଳିଯୁକ୍ତ କବିତ୍ୱ ହେ ।
୭ମ ଛାନ୍ଦ

"**ଶ୍ୟାମ ରାସୋତ୍ସବ**"—ଣ-କାର ନିୟମରେ ଲିଖିତ । ୧୬ଟା ଛାନ୍ଦରେ ସଂପୂର୍ଣ୍ଣ । ଏଥିରେ ଶ୍ରୀକୃଷ୍ଣଙ୍କର ଶରତ୍ ରାସକ୍ରୀଡ଼ା ବର୍ଣ୍ଣିତ ହୋଇଅଛି । ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ବହୁଳ ପ୍ରୟୋଗ ଏଥିରେ ଦେଖାଯାଏ ।

"ଗୋପୀ ବିଳାପ"—ଶ୍ରୀକୃଷ୍ଣ ମଥୁରା ଗ୍ଭଲିଯିବାପରେ ଗୋପୀମାନଙ୍କର ବିଳାପ ଏଥିର ବର୍ଣ୍ଣିତ ବିଷୟ । ଦିନାଇ ଦାସଙ୍କ "ଗୋପୀଭାଷା" ପରି ଏଥିରେ ଗୋପୀମାନଙ୍କର ବିରହ ବର୍ଣ୍ଣିତ ହୋଇଅଛି ।

"ଗୁଣ୍ଡିଚା ବିଜେ"—ପୁରୀଧାମରେ ଜଗନ୍ନାଥ ମହାପ୍ରଭୁଙ୍କ ଗୁଣ୍ଡିଚା ଯାତ୍ରା ଖୋରଠା ଭାଷାରେ ଲେଖା ହୋଇଛି । ଏହା ଗୋଟିଏ କ୍ଷୁଦ୍ର ପଦ୍ୟ ଗ୍ରନ୍ଥ ।

"ଚତୁର ବିନୋଦ"—ଏହା ଗୋଟିଏ ଗଦ୍ୟ ଗ୍ରନ୍ଥ । ଅନେକ ଗୁଡ଼ିଏ କାଳ୍ପନିକ ଗଳ୍ପ ଏଥିରେ ସନ୍ନିବେଶିତ ହୋଇଅଛି । ଏହାର ଭାଷା ଏତେ ସରଳ, ସତେଜ ଓ ମାର୍ଜିତ ଯେ ବ୍ରଜନାଥଙ୍କୁ ଆଧୁନିକ ଓଡ଼ିଆ ଗଦ୍ୟର ପଥ ପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବ ନାହିଁ । ମାଦଳାପାଞ୍ଜି ପରେ ଚତୁରବିନୋଦହିଁ ପ୍ରାଚୀନ ଗଦ୍ୟ ଲେଖାମାନଙ୍କରେ ବୃହତ୍ତମ । ଓଡ଼ିଆ ଗଦ୍ୟ ସାହିତ୍ୟର ଇତିହାସରେ ଏହା ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

"ସମର ତରଙ୍ଗ"—

କାବ୍ୟବସ୍ତୁ—୧୭୮୧ ସାଲରେ ଢେଙ୍କାନାଳ ରାଜାଙ୍କ ସହିତ ମରହଟ୍ଟା ସୁବାଦାରଙ୍କ ଯେଉଁ ଯୁଦ୍ଧ ହୋଇଥିଲା ତାହାହିଁ ଏ କାବ୍ୟର ବର୍ଣ୍ଣିତ ବିଷୟ । ଢେଙ୍କାନାଳ ସମର ତରଙ୍ଗର ଲୀଳା ଭୂମି ।

"ଗଡ଼ର ପଶ୍ଚିମ ଦିଗରେ କୁନ୍ଥୁଣିଆ ପର୍ବତର ପାଦଦେଶଠାରୁ ତଳଗଡ଼ ଚକୁଁଣିଆ ସାହି ପର୍ଯ୍ୟନ୍ତ ଯେ ଶ୍ୟାମଳବର୍ଣ୍ଣ ଶସ୍ୟକ୍ଷେତ୍ର ଦେଖାଯାଏ ତାହାକୁ ଷାଠିଏ ବାଟି ବିଲ କହନ୍ତି । ଏହି ସ୍ଥାନରେ ମହରହଟ୍ଟା ସୈନ୍ୟମାନେ ଛାଉଣୀ କରି ଲଢ଼ାଇ କରିଥିଲେ । ଢେଙ୍କାନାଳର ପ୍ରବଳପ୍ରତାପାନ୍ୱିତ ରାଜା ତ୍ରିଲୋଚନ ମହୀନ୍ଦ୍ରବାହାଦୁର ଖ୍ରୀଷ୍ଟାବ୍ଦ ୧୭୬୪ ଠାରୁ ୧୭୯୮ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ଓ ଏହାଙ୍କ

ବାରଦର୍ପରେ ସେ ସମୟରେ ନିକଟବର୍ତ୍ତୀ ରାଜ୍ୟମାନ କମ୍ପିତ ହେଉଥିଲା । ପୁରୀର ମହାରାଜା ତାଙ୍କଠାରେ ଅତ୍ୟନ୍ତ ପ୍ରୀତ ହୋଇ ପୁରୁଷାନୁକ୍ରମେ ଭୋଗ କରିବାକୁ ମହୀନ୍ଦ୍ରବାହାଦୁର ପଦ ସନନ୍ଦ ପ୍ରଦାନ କରିଥିଲେ । ଏ ସମୟରେ ଢେଙ୍କାନାଳର ସୈନ୍ୟ ସଂଖ୍ୟା ଦଶସହସ୍ର ପାଇକ, ଅଠରଶତ ତେଲଙ୍ଗା ଏବଂ ପାଞ୍ଚଶତ ନାଗା ଥିଲେ । ମଲ୍ଲମାନଙ୍କ ସହିତ ପ୍ରତିଦିନ କୁସ୍ତି କରିବା ଲାଗି ରାଜା ଆପଣା ପାଖରେ ତେରଜଣ ବିଦେଶୀ ମଲ୍ଲ ରଖିଥିଲେ । ଏ ସମୟକୁ ମରହଟ୍ଟାମାନଙ୍କର ଓଡ଼ିଶା ଅଧିକାର ଅଳ୍ପଦିନ ହୋଇଥିଲା ଏବଂ କଟକଠାରେ ରାଜାରାମ ପଣ୍ଡିତ ସୁବେଦାର ଥିଲେ । ଢେଙ୍କାନାଳ ରାଜା ଅଧୀନତା ସ୍ୱୀକାର ନ କରି ପେଶ୍‌କସ୍ ଦେବାରେ ବିଳମ୍ବ କରିବାରୁ ରାଜାରାମ ସୈନ୍ୟସାମନ୍ତ ନେଇ ଢେଙ୍କାନାଳ ଅନ୍ତର୍ଗତ ମୋଟର ଗ୍ରାମଠାରେ ଉପସ୍ଥିତ ହୁଅନ୍ତେ ସେଠାରେ ଯେ ଯୁଦ୍ଧ ହୋଇଥିଲା ତହିଁରେ ମରହଟ୍ଟାମାନେ ପରାସ୍ତ ହୋଇଥିଲେ ଏବଂ ରାଜସୈନ୍ୟମାନେ ଲୌହଧମସ ଓ ଚଡ଼କ ନଳ ପ୍ରଭୃତି ଲୁଟି ଆଣିଥିଲେ । ଅଧୁନା ଉକ୍ତ ଲୌହଧମସ ଓ ଚଡ଼କନଳ ରାଜଅସ୍ତ୍ରାଗାରରେ ଦେଖାଯାଏ । ତହୁଁ ରାଜାରାମ ଅତ୍ୟନ୍ତ ଲଜ୍ଜିତ ହୋଇ ନାଗପୁରଠାକୁ ରାଜା ମାଧୋଜିଙ୍କ ସମୀପକୁ ସମ୍ବାଦ ପଠାନ୍ତେ ରାଜା ତାହାଙ୍କ ଭାଇ ଚେମନ ବାବୁଙ୍କ ସଙ୍ଗରେ ଅନେକ ସୈନ୍ୟ ଦେଇ ଅତି ସମାରୋହରେ ଢେଙ୍କାନାଳକୁ ପଠାଇଲେ । ଢେଙ୍କାନାଳ ଗଡ଼ଠାରେ କେତେକ ଦିନ ପର୍ଯ୍ୟନ୍ତ ଉଭୟ ପକ୍ଷର ଯୁଦ୍ଧ ହେଲା ଉତ୍ତାରୁ ଅବଶେଷରେ ସନ୍ଧି ସ୍ଥାପନ ହେଲା । ଯୁଦ୍ଧ ପରେ ମରହଟ୍ଟା ନୃପତି ଢେଙ୍କାନାଳର ବାର୍ଷିକ ପେଶ୍‌କସ୍ ଷାଠିଏ ହଜାର କାହାଣରୁ ଅର୍ଦ୍ଧେକ ଛାଡ଼ି ଦେଇଥିଲେ । ଏହି ଯୁଦ୍ଧ ସମୟରେ ଗଡ଼ର ଗୃହପାର୍ଶ୍ୱରେ ଯେ ଜଳ ତୟାର ହୋଇଥିଲା ତାହା ବର୍ତ୍ତମାନ ଅନେକ ସ୍ଥାନରେ ପୋତା ପଡ଼ିଅଛି ଏବଂ ଯେ ମୁରୁମ ଓ ପଥରକାନ୍ଥ ଥିଲା ତାହା ଭଙ୍ଗା ଯାଇ ତହିଁରେ ଥିବା ପଥର ଦ୍ୱାରା ଲାଉଁଳ ପୋଖରୀ

ନିକଟ ପୁରୁଣା ଇନ୍‌ସପେକ୍‌ସନ ବଙ୍ଗଳା ପ୍ରଭୃତି କୋଠାମାନ ନିର୍ମିତ ହୋଇଅଛି ।” ( ଶ୍ରୀ ଦାମୋଦର ପଟ୍ଟନାୟକ ସଂ. ତ. ମୁଖବନ୍ଧ )

ଘଟଣାଟି ଯେ ଐତିହାସିକ ଭିତ୍ତି ଉପରେ ପ୍ରତିଷ୍ଠିତ ଏଥିରେ କୌଣସି ସନ୍ଦେହ ନାହିଁ । ସେ ସମୟର ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କ ରିପୋର୍ଟମାନଙ୍କରେ ଏହାର ବର୍ଣ୍ଣନା ସଂକ୍ଷେପ ଭାବରେ ଦିଆଯାଇଛି ।

**କାବ୍ୟ ବିଷୟ :—**

କବି ଐତିହାସିକ ବିଷୟଟିକୁ ଅବଲମ୍ବନ କରି ୭ଟି ଛୋଟ ଛୋଟ ଛାନ୍ଦରେ ଗ୍ରନ୍ଥ ସଂପୂର୍ଣ୍ଣ କରି ଅଛନ୍ତି ।

ପ୍ରଥମ ଛାନ୍ଦରେ ଢେଙ୍କାନାଳ ରାଜବଂଶର ଗୌରବର କଥିତ ଅଭାସ ଦେଇ ତତ୍‌କାଳୀନ ରାଜା ତ୍ରିଲୋଚନ ମହେନ୍ଦ୍ର ବାହାଦୁରଙ୍କ ଗୁଣ ବର୍ଣ୍ଣନା କରି ଅଛନ୍ତି । ତାପରେ କାବ୍ୟର ବିଷୟ ଅବତାରଣା କରି-ଅଛନ୍ତି । ରାଜା ତ୍ରିଲୋଚନ ସରବରା ନ ଦେବାରୁ ଓଡ଼ିଶାର ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ ମଞ୍ଜୁ ଚୌଧୁରୀଙ୍କୁ ସଙ୍ଗରେ ନେଇ ଢେଙ୍କାନାଳ ଆକ୍ରମଣ କଲେ । ଢେଙ୍କାନାଳ ଫୌଜ ତାଙ୍କୁ ଅତର୍କିତ ଭାବରେ ପ୍ରତିଆକ୍ରମଣ କରି ପରାସ୍ତ କଲେ । ରାଜାରାମଙ୍କ ସୈନ୍ୟମାନେ ବ୍ୟତିବ୍ୟସ୍ତ ହୋଇ କଟକ ଫେରିଯିବାରୁ ଚେମଣା ବାବୁ ଅତ୍ୟନ୍ତ କ୍ରୋଧ ପ୍ରକାଶ କଲେ । ବର୍ଷାକାଳ ଶେଷ ହେବା ପରେ ପୁନର୍ବାର ଢେଙ୍କାନାଳ ଉପରେ ଆକ୍ରମଣ ହେଲା । ମରହଟ୍ଟା ସୈନ୍ୟର ଦୃଶ୍ୟ ଏହି ଛାନ୍ଦରେ ବର୍ଣ୍ଣିତ ହୋଇଛି ।

ସାରା ଫଉଜ କପରି ଭାବରେ ତିଆର ହେଲେ ଏବଂ ସେମାନଙ୍କର ଗତିବିଧି କପରି ଚମତ୍କାର ହୋଇଥିଲା ତାହାପରେ ବର୍ଣ୍ଣନା କରାଯାଇଛି । ମରହଟ୍ଟା ସୈନ୍ୟଙ୍କୁ ଦେଖି ତ୍ରିଲୋଚନ ମହେନ୍ଦ୍ର ଗଡ଼ ନିର୍ମାଣ କରି

ନିଜର ସୈନ୍ୟସାମନ୍ତ, ରଣସମ୍ଭାର ସଜ୍ଜିତ କଲେ । ନିଜ ସୈନ୍ୟମାନଙ୍କୁ ଅଗ୍ନିସମ ଉତ୍ତେଜନାବାଣୀରେ ସମ୍ବୋଧନ କଲେ । ଏହା ଦ୍ୱିତୀୟ ଛନ୍ଦରେ ବର୍ଣ୍ଣିତ ହୋଇଛି ।

ଉଭୟ ପକ୍ଷ ମଧ୍ୟରେ ଭୀଷଣ ଯୁଦ୍ଧ ହେଲା । କେତେ ଯେ ସୈନ୍ୟ ମଲେ ତାହାର କଳନା ନାହିଁ । ମରହଟ୍ଟା ସୈନ୍ୟମାନଙ୍କର ଦୁର୍ଗତି କହିଲେ ନ ସରେ । ଉଭୟ ପକ୍ଷରୁ ବହୁ ସେନା କ୍ଷୟ ହେବାରୁ ଗୋଟିଏ ସାଲିସର ପ୍ରସ୍ତାବ ହେଲା—ଯଦି ତ୍ରିଲୋଚନ ମହେନ୍ଦ୍ର ଦୁଇ ଦିନ ପାଇଁ ଗଡ଼ ଛାଡ଼ି ଚାଲି ଯାଆନ୍ତି ତାହାହେଲେ ଯୁଦ୍ଧ ବନ୍ଦ ହେବ । ପ୍ରଥମେ ଢେଙ୍କାନାଳ ରାଜା ଅମଙ୍ଗ ହୋଇଥିଲେ । ଏହି ବିଷୟ ତୃତୀୟ ଓ ଚତୁର୍ଥ ଛନ୍ଦରେ ବର୍ଣ୍ଣିତ ହୋଇଛି ।

ସନ୍ଧି ପ୍ରସ୍ତାବ ହେବା ମାତ୍ରେ ତ୍ରିଲୋଚନ ମହେନ୍ଦ୍ର ନିଜ ପାତ୍ର ମନ୍ତ୍ରୀ ସରଦାର ଦଳବେହେରା ପ୍ରଭୃତିଙ୍କୁ ଡକାଇ ପରାମର୍ଶ କଲେ । ରାଜାଙ୍କର ସନ୍ଧି କରିବାର ଇଚ୍ଛା ନ ଥିଲା । କିନ୍ତୁ ରାଜନୀତିକ ଚାଲି ହିସାବରେ ସନ୍ଧି ପ୍ରସ୍ତାବରେ ରାଜି ହେବାପାଇଁ ସଭାର ସଭ୍ୟମାନେ ରାଜାଙ୍କୁ ପରାମର୍ଶ ଦେଲେ । ଅନିଚ୍ଛା ସତ୍ତ୍ୱେ ରାଜା ସନ୍ଧି ପ୍ରସ୍ତାବରେ ରାଜି ହେଲେ । ଏହା ପଞ୍ଚମ ଛନ୍ଦରେ ବର୍ଣ୍ଣିତ ହୋଇଛି ।

ରାଜା ଗଡ଼ ଛାଡ଼ି ଦୁଇଦିନ ପାଇଁ ଅନ୍ୟ ସ୍ଥାନକୁ ଚାଲିଯିବାରୁ ସନ୍ଧି ସ୍ଥାପିତ ହେଲା । ଯେଉଁ ପାଇକମାନେ ରାଜାଙ୍କ ବିରୁଦ୍ଧରେ ଲଢ଼େଇ କରୁଥିଲେ ସେମାନେ ସନ୍ଧି ପରେ ତାଙ୍କର ମିତ୍ର ହେଲେ । ଯୁଦ୍ଧରେ ରାଜା ଯେଉଁ ପରାକ୍ରମ ଦେଖାଇଥିଲେ ତାହାର ବହୁ ପ୍ରଶଂସା କଲେ । ସେ ସମୟର କେଉଁଝରଅଧିପ ଏହା ସହୁ ନ ପାରି ସୀମା ପାଖରେ ଢେଙ୍କାନାଳର କେତେକ ଗ୍ରାମ ଲୁଟ୍ କଲେ । ଢେଙ୍କାନାଳ ତରଫରୁ ତାର ପ୍ରତିକାରର ବ୍ୟବସ୍ଥା ହେଲା । ଉଭୟ ପକ୍ଷ ଭିତରେ ଯୁଦ୍ଧ ହେଲା ।

କେଉଁଝର ରାଜା ପରାସ୍ତ ହେଲେ । ଏହା ଷଷ୍ଠ ଛନ୍ଦର ବର୍ଣ୍ଣିତ ବିଷୟ ।

ସପ୍ତମ ଛନ୍ଦରେ କବି ତାଙ୍କ ପୃଷ୍ଠପୋଷକ ତ୍ରିଲୋଚନ ମହେନ୍ଦ୍ର ବାହାଦୁରଙ୍କ ଗୁଣାବଳୀ ବର୍ଣ୍ଣନା କରି ନିଜ ବଂଶ ଓ ନିଜର ପରିଚୟ ପ୍ରଦାନ କରିଅଛନ୍ତି ।

ବ୍ରଜନାଥ ସମର ତରଙ୍ଗରେ ଯେଉଁ ପ୍ରତିଭା ପ୍ରଦର୍ଶନ କରିଅଛନ୍ତି ତାହା ଅନନ୍ୟସାଧାରଣ । ଯେଉଁ ବିଷୟଟିକୁ ସେ ଧରିଛନ୍ତି ତାକୁ ଜୀବନ୍ତ ନ କରି ଛାଡ଼ି ନାହାନ୍ତି । ତ୍ରିଲୋଚନ ମହେନ୍ଦ୍ର ବାହାଦୂରଙ୍କ ଚରିତ୍ରଟି ଏଡ଼େ ସୁନ୍ଦର ଭାବରେ ଅଙ୍କିତ ହୋଇଛି ଯେ ସତେ ଯେପରି ତ୍ରିଲୋଚନ ମହେନ୍ଦ୍ର ବାହାଦୁର ତାଙ୍କର ରକ୍ତମାଂସ ଶରୀର ଧରି ଆମ ଆଖି ଆଗରେ ଠିଆ ହୋଇ ରହିଛନ୍ତି, ଟିକିଏ ନଖ ମାରିଦେଲେ ଯେପରି ରକ୍ତ ବୋହି ପଡ଼ିବ । ସମର ବର୍ଣ୍ଣନା, ଢେଙ୍କାନାଳ ଓ ମରହଟ୍ଟା ସୈନ୍ୟ ବର୍ଣ୍ଣନା, ମରହଟ୍ଟା ସୈନ୍ୟମାନଙ୍କ ବିଳାପ, ତ୍ରିଲୋଚନଙ୍କ ଉଦ୍‌ବୋଧନ, ପରାମର୍ଶ ସଭା, ଏଗୁଡ଼ିକ ଏକାବେଳକେ ଜୀବନ୍ତ ମୂର୍ତ୍ତି ଧାରଣ କରିଛି । ସ୍ଥାନାଭାବରୁ ଏହାର ବହୁଳ ଆଲୋଚନା ଏଠାରେ କରିଯାଇ ପାରିଲା ନାହିଁ ।

ସମର ତରଙ୍ଗରେ ଯୁଦ୍ଧର ଯେଉଁ ବର୍ଣ୍ଣନା ଦିଆଯାଇଛି ପୃଥିବୀର ଅନ୍ୟାନ୍ୟ ସାହିତ୍ୟରେ ମଧ୍ୟ ସେପରି ବର୍ଣ୍ଣନା ବିରଳ । ମହାଭାରତ ରାମାୟଣ ଓ ଅନ୍ୟାନ୍ୟ ଢେରଢେର କାବ୍ୟରେ ଯୁଦ୍ଧର ବର୍ଣ୍ଣନା ଦେଖିବାକୁ ମିଳେ । କିନ୍ତୁ ସେ ସବୁ କାଳ୍ପନିକ ବର୍ଣ୍ଣନା । ବ୍ରଜନାଥ ନିଜେ ଦେଖିଥିବା ଘଟଣାକୁ ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କର ଲେଖା ପଢ଼ିଲେ ସମଗ୍ର ଯୁଦ୍ଧଟି ଆଖି ଆଗରେ ଘଟୁଥିଲା ପରି ଲାଗେ ।

ତ୍ରିଲୋଚନ ମହେନ୍ଦ୍ର ବାହାଦୁରଙ୍କ ଉଦ୍‌ବୋଧନ ଓଡ଼ିଆ ସାହିତ୍ୟ କାହିଁକି ବିଶ୍ୱସାହିତ୍ୟରେ ଗୋଟିଏ ଅମୂଲ୍ୟ ରତ୍ନ । ତ୍ରିଲୋଚନଙ୍କ ବାଣୀ ଶୁଣିବାକ୍ଷଣି ଅତି ନିର୍ଜୀବ ନିସ୍ତେଜ ଲୋକର ମଧ ରକ୍ତ ଗରମ ନ ହୋଇ

ରହି ପାରିବ ନାହିଁ । ଦେଶମାତୃକା ପାଇଁ ଜୀବନ ଦାନ କରିବା ଯେ କି ଗୌରବର ବିଷୟ ତାହା ନିଳୋଚନଙ୍କ ଉଦ୍‌ବୋଧନରେ ବିଶେଷ ଭାବରେ ପ୍ରତିଫଳିତ ହୋଇଛି ।

"ସମର ତରଙ୍ଗର ଭାଷା ସରଳ, ସତେଜ ଓ ଉତ୍ତେଜନାପୂର୍ଣ୍ଣ । ଶବ୍ଦ ବିନ୍ୟାସ କିପରି ଗୋଟାକୁ ଗୋଟା ଗୁଳି ଫିଏର ଶବ୍ଦ ପରି ହୃଦୟକୁ ଦାଉଁ ଦାଉଁ କରେ ।"

ଉପମା ବିଭବରେ ମଧ୍ୟ ବ୍ରଜନାଥ ବଡ଼ କୃତିତ୍ୱ ଅର୍ଜ୍ଜନ କରି ଅଛନ୍ତି । ନିଳୋଚନଙ୍କ କାନ୍ତି ଓ ଦୀପ୍ତି ବର୍ଣ୍ଣନା କଲାବେଳେ ଓ ସୈନ୍ୟ ସାମନ୍ତଙ୍କୁ ବର୍ଣ୍ଣନା କଲାବେଳେ ବ୍ରଜନାଥ ଯେଉଁସବୁ ଉପମା ଦେଇଛନ୍ତି ତାହା ଭାବ ଓ ବିଷୟର ଅନୁକୂଳ ହୋଇଛି । ଏହିସବୁ ଉପମା ଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ଯେ ବହୁଗୁଣରେ ବର୍ଦ୍ଧିତ ହୋଇଛି, ଏଥିରେ ସନ୍ଦେହ ନାହିଁ ।

ସମର ତରଙ୍ଗରେ ବ୍ୟଙ୍ଗ ରୀତି ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା । ବର୍ଗୀମାନଙ୍କ ପ୍ରଥମ ଆକ୍ରମଣ ବେଳେ ତାଙ୍କୁ ଢେଙ୍କାନାଳ ଫୌଜ କିପରି ପରାସ୍ତ କଲେ, ଯୁଦ୍ଧରେ ଖଣ୍ଡିଆଖାବରା ହୋଇ ହିନ୍ଦୁସ୍ଥାନୀ ସୈନ୍ୟମାନେ କିପରି କାନ୍ଦିଲେ ତାହା ବ୍ରଜନାଥ ଏପରି ଭାବରେ ଲେଖିଛନ୍ତି ଯେ ତାହା ପଢ଼ିଲେ ହସିହସି ପେଟ ଫାଟିଯିବ । ହିନ୍ଦିମିଶା ଓଡ଼ିଆ ଭାଷାର ପଂକ୍ତିଗୁଡ଼ିକ ଅତି ଚମତ୍କାର ହୋଇଛି ।

ଓଡ଼ିଆ ସାହିତ୍ୟରେ ସମର ତରଙ୍ଗର ସ୍ଥାନ ଅତି ଉଚ୍ଚରେ । ଯୁଦ୍ଧ-କାବ୍ୟ ହିସାବରେ ଏହା ଶ୍ରେଷ୍ଠ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାର ଉପଯୁକ୍ତ ଅନୁବାଦ ହେଲେ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କରେ ମଧ୍ୟ ଯେ ବିଶେଷ ଭାବରେ ଆଦୃତ ହେବ, ଏଥିରେ କୌଣସି ସନ୍ଦେହ ନାହିଁ ।

କିମ୍ବଦନ୍ତୀ ଅଛି, ଯୁଦ୍ଧ ପରେ ବ୍ରଜନାଥ କାବ୍ୟଟିକୁ କଟକଠାରେ ଚେମଣା ବାବୁଙ୍କୁ ଶୁଣାଇଥିଲେ । ଚେମଣା ବାବୁ ପ୍ରଥମ ଛାନ୍ଦଟି ଶୁଣି

ଅତ୍ୟନ୍ତ ଅନାଦୃତ ହୋଇଥିଲେ । କିନ୍ତୁ ଦ୍ୱିତୀୟ ଖଣ୍ଡରେ ଯେଉଁଠାରେ ଚେମଣା ବାବୁଙ୍କୁ ଲକ୍ଷ୍ୟ କରି ଲେଖା ଯାଇଛି—"ବାନ୍ଧୁ ପଛେ ସେ ଫଡ଼କା ବାନା, ଯେତେ ହୋଇଲେ ଲଢ଼କା ସିନା, କାଢ଼ିବା ରଙ୍ଗ କି କରିବ ନା, ମୂଳ ହେମନ୍ତ ଯେ ।" ଏହିତକ ଶୁଣି ବିରକ୍ତ ହୋଇ ବାହିଟିକୁ ଫିଙ୍ଗିଦେଇ କହିଥିଲେ—"ଆମ୍ଭେ ଲଢ଼ିବା ହେଲେ କି ଆମ୍ଭ ହୁକୁମ ଲଢ଼କା ?" ( ଦା. ପଟ୍ଟନାୟକ, ସ. ତ. ମୁଖବନ୍ଧ )

ସମର ତରଙ୍ଗର ପ୍ରଥମ ଛିନ୍ନଖଣ୍ଡ ଓଡ଼ିଆ ସାହିତ୍ୟର ଉଜ୍ଜ୍ୱଳମଣି, ଏହା କହିବା ବାହୁଲ୍ୟ ମାତ୍ର ।

ସରଳା ଦେବୀ



# କୃତଜ୍ଞତା

ସମର ତରଙ୍ଗର ଟୀକା ପଣ୍ଡିତ ଶ୍ରୀ କେଶବ ମିଶ୍ର (ଅବସରପ୍ରାପ୍ତ ସ୍କୁଲ ଡେପୁଟି ଇନ୍‌ସପେକ୍ଟର)ଙ୍କ ଦ୍ୱାରା ଲିଖିତ ହୋଇଛି । କେଶବ ବାବୁ ଅନୁରୋଧ ରକ୍ଷା କରି ଏହିନତକ କରି ଦେଇଥିବାରୁ ତାଙ୍କଠାରେ ଋଣୀ ରହିଲି । ଢେଙ୍କାନାଳ ସାହିତ୍ୟ ସଙ୍ଘ ସମର ତରଙ୍ଗର କେତେକ ପାଠ ସମ୍ବନ୍ଧରେ ମୋତେ ସାହାଯ୍ୟ କରିଥିବାରୁ ତାଙ୍କଠାରେ କୃତଜ୍ଞତା ଜଣାଉଅଛି । ଶ୍ରୀମତୀ ସରଳା ଦେବୀ ମୁଖବନ୍ଧଟି ଲେଖି ଦେଇଥିବାରୁ ତାଙ୍କୁ ହୃଦୟର କୃତଜ୍ଞତା ଜଣାଉଅଛି ।

ପ୍ରକାଶକ

# ସମରତରଙ୍ଗ



## ପ୍ରଥମ ଛାନ୍ଦ

ରାଗ—ରସକୋଇଲି ।

ଶ୍ରୀ ରାଧାବର ଚରଣକୁ ଚିନ୍ତି । କହୁଛି ଯାହା ଶୁଣ ହେ ସୁମତି
ଦକ୍ଷିଣସିନ୍ଧୁତଟେ ନିତ୍ୟ ଧାମ । କ୍ଷେତ୍ରବର ପୁରୁଷୋତ୍ତମ ନାମ ସେ ।
ଯହିଁ ବିଜେ ଜଗନ୍ନାଥ ଯେ ।
ବଳଭଦ୍ର ଭଦ୍ରା ସୁଦରଶନ ଏ ଚାରି ମୂରତି ବ୍ୟକତ ଯେ । ୧ ।
ପତିତମାନଙ୍କୁ କରି ମୁକତ । ଉଡ଼ାଇ ପତିତପାବନ କେତ ।
ପରମାନନ୍ଦ ସୁନ୍ଦର ସ୍ୱରୂପ । ଦରଶନେ ଦୂର କରନ୍ତି ତାପ ସେ ।
କୃପାସିନ୍ଧୁ ଦୀନବନ୍ଧୁ ଯେ ।
ନିଖିଳ ମାନସ-କୁମୁଦ ଉଲ୍ଲାସ କରିବାକୁ ପୂର୍ଣ୍ଣଇନ୍ଦୁ ଯେ । ୨ ।
ଏହି କ୍ଷେତ୍ରର ଉତ୍ତରଦିଗରେ । ଢେଙ୍କାନାଳ ନାମେ ଅଛି ନଗରେ ।
ଧାତା କଲା କି ଯତନେ ନିର୍ମାଣ । ରସାରସିକ କି ଶିରୋଭୂଷଣ ସେ ।
କି କହିବା ତାର ଠେକ ଯେ ।
ସୁଖ ବିନା ଦୁଃଖ କି ରୂପେ ହୁଅଇ ନ ଜାଣନ୍ତି ତହିଁ ଲୋକ ଯେ । ୩ ।
ସିଂହ ବିଦ୍ୟାଧର ବୀରମଣ୍ଡନ । ଆଦ୍ୟରୁ ହେଲେ ସେ ରାଜ୍ୟେ ରାଜନ ।
ତାଙ୍କଠାରୁ ପ୍ରତି ପୁରୁଷେ ରାଜା । ଶୂର ପ୍ରତାପୀ ଦାତା ମହାତେଜା ସେ ।
ହେଲେକୁବେର ଅଧିକ ଯେ ।
ଖଣ୍ଡାବଳେ କେତେ ଖଣ୍ଡାଇତଙ୍କର ଛଡ଼ାଇ ନେଲେ ମୁଲକ ଯେ ।୪।

ଏଥିରେ ନୃସିଂହ ଭ୍ରମରବର । ରାଜ୍ୟ ପୁଣି ଯଶ କଲେ ଅପାର ।
ତାହାଙ୍କ ନନ୍ଦନ କୃଷ୍ଣବହାଲ୍ସ । ତାଙ୍କ ଗୁଣ ପୁଣ ବର୍ଣ୍ଣି ନ ପାରି ସେ ।
ଶୂର ସୁନ୍ଦର ରସିକ ଯେ ।
ଦାତା ଗୁଣବନ୍ତ କବି ଧର୍ମରତ ପ୍ରତାପବନ୍ତ ବିବେକ ଯେ । ୫ ।
ତାଙ୍କ ତନୁ ସିନ୍ଧୁ ଚନ୍ଦ୍ରମା ପ୍ରାୟ । ତ୍ରିଲୋଚନ ଭ୍ରମରବର ରାୟ ।
ତ୍ରିଜବହାଲ୍ସ କାମ ସମ ରୂପ । ଆଶ୍ରିତଲୋକଙ୍କ କଳ୍ପପାଦପ ସେ ।
ସକଳ ଗୁଣେ ନିପୁଣ ଯେ ।
ଏଥିଉତ୍ତାରୁ ଯେ ନୃପ ହୋଇଛନ୍ତି ତାଙ୍କ ଯଶ ଗୁଣ ଶୁଣ ଯେ । ୬ ।
ଯଦୁବଂଶରେ ଯଥା ପଶ୍ଚିଦିତ । ପାଣ୍ଡବେ ଯୁଧିଷ୍ଠିର ଯେଉଁବତ ।
ସିଂହ ବିଦ୍ୟାଧର କୁଳେ ତେମନ୍ତ । ଉଦୟ ମହା ଦୀପ୍ତି ସୂର୍ଯ୍ୟବତ ସେ ।
ତ୍ରିଲୋଚନ ନାମେ ଖ୍ୟାତ ଯେ ।
ରାଜା ମହେନ୍ଦ୍ର ବାହାଦୂର ପଦ ଯା ସଂସାର ମଧ୍ୟେ ବିଦିତ ଯେ । ୭ ।
ଢେଙ୍କାନାଳ ମହୀ ଗଗନଶଶୀ । ଲକ୍ଷଣବନ୍ତ ଦୁଃଖତମ ନାଶୀ ।
କଳାକର ତାର ଆନନ୍ଦକର । ଉଦେ ହୋଇ ରାଜେ ସର୍ବ ହୃଦର ସେ ।
ଉଜ୍ଜ୍ୱଳକଳା ପ୍ରକାଶେ ଯେ ।
ପଦ୍ମିନୀ ମୁଦ୍ରିତ ହୋଏ ଯା ଲୋକନେ ସୁରଗଣଙ୍କୁ ସେ ତୋଷେ ଯେ । ୮ ।
ଯାହାର କୀର୍ତ୍ତିକାନ୍ତ ପ୍ରବଳେ । ପରିପୂର୍ଣ୍ଣ ହୋଇ ମହୀମଣ୍ଡଳେ ।
ସ୍ଥାନ ନ ପାଇ ବାହାରି ପଡ଼ିଲା । ଦଶଦିଗରେ ପରିପୂର୍ଣ୍ଣ ହେଲା ସେ ।
ତହିଁ ସ୍ଥାନ ହୋଏ ନାହିଁ ଯେ ।
ତାରାକୁଳ ଛଳେ ଠାବେ ଠାବେ ଏବେ ଆକାଶେ ଲୋଟନ୍ତି ଯାଇ ଯେ ॥
ପ୍ରଚଣ୍ଡ ବୀର ପ୍ରତାପ-ତପନ । ଶୁଖାଇଲା ଅରି ଆନନ୍ଦ ମନ ।
ନୃପତିବଳ ଅନ୍ଧକାର ହର । ତେଜ ତ ସକଳ ଭୁବନେ ପୂରି ଯେ ।
ଦୁଷ୍ଟ କୁହୁଡ଼ ନାଶିଲା ସେ ।
ଅନୁଗତ ଲୋକ ପଙ୍କଜକମଳକୁଳ ଶୋଭା ବିକାଶିଲା ସେ । ୧୦ ।

ରସ ପ୍ରତାପ ବର୍ଣ୍ଣି ହୋଇବ ନାହିଁ । ସହସ୍ର କବି ନ ପାରିବେ କହି ।
ସିନ୍ଧୁବାଲି କେ କରିବ ପ୍ରମାଣ । ଆକାଶ କଳନା ହୋଏ କି ଶୂନ୍ୟ ଯେ ।
ତଥାପି କହିବା କିଛି ଯେ ।
ଏ ନୃପସିଂହ ଚରିତ ବର୍ଣ୍ଣିବାକୁ ଶରଧା ତ ବଳୁଅଛି ଯେ । ୧୧ ।
ବରଗି ଓଡ଼ିଶା କଲେ ଅମଳ । ସରବସ୍ୱ ଦେଉଥିଲେ ଭୂପାଳ ।
ବହୁଯୋଗେ ହେଲା ଅନବନାଜ । ରାଜାରାମ ଯୋଷା ବହିଲେ ତହିଁ ଯେ
ଫଉଜ କଷିଲେ କୋପେ ଯେ ।
ମଞ୍ଜୁ ଚଉଧୁରୀ ସଙ୍ଗତେ ବଗୃର ବାହାର ହୋଇଲେ ଅପେ ଯେ ।୧୨।
ମୋଠରେ ( ୧ ) ନିକଟେ ପଡ଼ିଲେ ବଳ । ଓକିଲ ପେଷିଲେ ଅବଗାଧାଲ
କାହିଁ ପାଇଁ ପୃଥ୍ୱୀ ନାଶିବ ମୋର । ପଇସା ନେଇ ଫେରିଅ ଲସ୍କର ହେ ।
ନ ଦେବ ତା ରାଜାରାମ ଯେ ।
ଦଗା ଦେବା ମନେ ଗୁପତେ ଅରଣ୍ୟେ ବାହାରିଲେ ବହି ତମ ଯେ ॥
ନୃପତ୍ତ ଜାଣି ସେ କୂଟବଗୃର । ଅଙ୍କ ଦେଲେ ଦେଖି ଯାଅ ଅମୃତ ।
ରାଜାରାମ ପଣ୍ଡିତଙ୍କୁ ବାଟରେ । ସଙ୍କୋଳ ଅସ ମର୍ଯାଦା ବେଭାରେ ସେ ।
ହାକମ ଅଠନ୍ତି ସେହି ଯେ ।
ଘର ଗୁଳ ଦେଇ ଭେଟିବ ତାହାଙ୍କୁ ପାସୋରିବେ ନାହିଁ ଆଉ ଯେ ।
ଅଙ୍କ ପାଇ କିଛି ଫଉଜ ଗଲେ । ରାଜାରାମଙ୍କୁ ଦରଶନ କଲେ ।
ଦଇବେ ସେ ତ ପଣ୍ଡିତ ଗୋସାଇଁ । ବହୁତମତେ ସେବା କଲେ ଯାଇଁ ସେ
କୋଣେ ଅନୁସର ଗଲେ ଯେ ।
କେତେ ଜମାଦାର ସେବାରେ ତାଙ୍କର ଠାବେ ଠାବେ ବସା କଲେ ଯେ ॥
ଅତି ଦୟାଳୁ ପଣ୍ଡିତସାହେବେ । ଚଉଧୁରୀ ବଡ଼ଲୋକ ଦଇବେ ।
ରାଜାଙ୍କ ଏ ଅନୁସରଣ ଦେଖି । ଅତି ପରସନ୍ନ ହୋଇଲେ ବେଶି ସେ ।

( ୧ ) ଢେଙ୍କାନାଳ ଗଡ଼ର ମା ୨୪ ଇଲ ଦୂରରେ ଅବସ୍ଥିତ ।

ଇନାମ ଦେଲେ ବହୁତ ଯେ ।
ଗାଡ଼ ଘୋଡ଼ା ଓଁଠ ପାଲଙ୍କି କନାଟତମ୍ବୁ ଶାଲ ବନାଉତ ଯେ । ୧୬ ।
ଝରଡ଼ା ସତରଞ୍ଜି ଖଟ ଭୂଲ । ରେକାଇ ଗାଲଚ୍ଚ ଶେଯ ମୁଚୁଲ ।
ଗଡ଼ୁଆ ଗଗରା କେତେ ବାସନ । କେତେ ଯାଚି ଦେଲେ ହୋଇ ପ୍ରସନ୍ନ
ଗ୍ରାହକ ଅଟନ୍ତି ସେ ତ ଯେ ।
ଗୁଣ ଶକ୍ତି ଅତି ତହିଁ ଯାଇ ସେ ବୋଇଲେ ନିଅ ସମସ୍ତ ଯେ । ୧୭।
ମାତଙ୍ଗ ଧଣ୍ଡା ଚମକ ନିଶାଣ । ଢାଲ ତରଓ୍ୱାର କଟାରୀ ପୁଣ ।
ସବୁ ଦେଇ ତେବେ ସନ୍ତୋଷ ନୋହି । ଜୀବନ ଯାଚି ଦେଲେ କେହି
କେହି ସେ ।
ତହିଁ କେଉଁ କେଉଁ ଜନ ଯେ ।
ଅନନ୍ଦେ ଦିଗମ୍ବର ବେଶେ ଚଳଲେ ପିନ୍ଧାବାସ କରି ଦାନ ଯେ ।୧୮।
ପଣ୍ଡିତ ସାହେବ ହିଁ ସବୁ ଦେଇ । କହିଲେ ଅନୁରୂପ ହେଲା ନାହିଁ ।
ପ୍ରାଣହିଁ ଦେଉଥିଲେ ପ୍ରୀତିବଶେ । ରାଜାଙ୍କ ଲୋକେ କହିଲେ ହରଷେ
ଏଥର ବିଜୟ କର ହେ ।
ଅଉ ଥରେ ଯେବେ ଦିହ ମାଛ ହେବ ଏହା ଘେନିବୁ ନିକର ହେ ।।
ଚଉଧୁରୀ ବାବା ସନ୍ତୋଷ ହୋଇ । ଏହିରୂପରେ ସବୁ ଗଲେ ଦେଇ ।
ଯହିଁ ମୂଲକ ହୋଇଗଲେ ପାରି । ସଂସାରେ ଯୋଜକରେ ମଢ଼ିଲା ହରି ସେ ।
ଢେଙ୍କାନାଳ ନରପତି ଯେ ।
ଯାଉଁ ଯାଉଁ ବାଟେ ଲୁଟିଲେ କପଟେ କଟକ ସାରା ସମ୍ପତ୍ତି ଯେ ।୨୦।
ସହଜେ ତ ତାଙ୍କୁ ପଡ଼ିଲା ଦଣ୍ଡ । ଘାଉଆ ଯିବାରେ ନ ଚଳେ ଦାଣ୍ଡ ।
ଗୋଟିଏ ତ ନାହିଁ ନ ବାଜି କଣ୍ଡ । ହଜାର ହଜାର ହୋଇଲେ
ରାଣ୍ଡ ସେ ।
ଲୋଉଛି ପଡ଼େ ହହିର ଯେ ।
କାହା ସୁତ ବର ଖୁଡ଼ୁତା କାହାର ମଲେ ଶ୍ୱଶୁର ଦିଅର ଯେ । ୨୧ ।

ସଂସାରେ ଅକାର୍ଯ୍ୟ ହେବାରୁ ଘୋର । ସବୁ ଲଭିପି ଦେଲେ ନରେଶ୍ୱର ।
ତଥାପି ତାଙ୍କ ମନ ଥିର ନୁହେଁ । ଲୋକ ପେଷିଲେ ନାଗପୁରଯାଏ ସେ ।
ଏମନ୍ତ କଲେ ଅରଜ ଯେ ।
ଢେଙ୍କାନାଳ ରାଜା ପ୍ରବଳେ ତମାମ ଓଡ଼ିଶା ଯାଉଛି ଭାଜି ଯେ । ୨୨ ।
ଯେଣୁ ଚଗୁଲ ନାନାମତେ କଲେ । ଅପେ ଚେମଣା ବାବୁ ବାହାରିଲେ
ବାଟକୁ ରାଜାରାମ ମଞ୍ଜୁ ଯାଇ । ବୋଇଲେ ବଙ୍ଗଳା ଯାଅ କପାଇ ସେ ।
କଲିକତା ଢେଙ୍କାନାଳ ଯେ ।
ଏହା ସାଧ କରି ନ ଗଲେ କଟକ ଛାଡ଼ ଯାଉଛୁଁ ସମ୍ଭାଳ ଯେ । ୨୩ ।
ସାରି ଫଉଜ ପକାଇଲେ ଆଣି । ମହାଭୟରେ କମ୍ପିଲା ଧରଣୀ ।
ପବନ ନ ଚଳ ହୋଇଲା ସ୍ଥିର । ଶୁଖିଲା ସରିତ ପିଅନ୍ତେ ନୀର ସେ ।
ଅବାଟ ହୋଇଲା ବାଟ ଯେ ।
ଦଣଦଗ ଧ୍ୱନ ପୂରିଲା ବାଜନ୍ତେ ବାଜ କରି କଣ୍ଠଘଣ୍ଟ ଯେ । ୨୪ ।
ବାରହନ ତାଙ୍କ ପଡ଼ିବା ଘେନ । ତଳକୁ ଲଶି ଗଲେକ ମେଦନୀ ।
ଅଟଇ ସେ ଅତି ନିଦାଘକାଳ । ଜଳ ନ ପାଇ ହୋଇଲେ ଆକୁଳ ସେ ।
ବାଞ୍ଛା ନ ପାଇଲେ ତରି ଯେ ।
ବାଡ଼ରେ ଅନେକ ମରିଗଲେ ଲୋକ ସହି ନ ପାରିଲେ ଖରା ଯେ ।୨୫।
ଉପରମନେ ବନ୍ଦୋବସ୍ତ କରି । ଫଉଜ ଗଲେ କଟକ ବାହାରି ।
ପଇସା ତ ସବୁ ମିଳିଲା ନାହିଁ । ଏଣୁ ଚେମଣାବାବୁ ରୋଷ ବହି ସେ ।
ଜଳିଲେ ଅଗ୍ନି ପରାୟେ ଯେ ।
ମଞ୍ଜୁ ରାଜାରାମଙ୍କର କ୍ରୋଧବାଣୀ ଘୃତ ତହିଁ ପଡୁଥାଏ ହେ । ୨୬ ।
କ୍ରମେ ଶେଷ ହେଲା ବରଷାକାଳ । ପଥହୁଁ ଚଳିଲା ଶୁଖନ୍ତେ ଜଳ ।
ଢେଙ୍କାନାଳକୁ ଧଣ୍ଡା ହେଲା ପାରି । ଫଉଜ ଅସିବେ ପଡ଼ିଲା ହୁରି ସେ ।
ସାଜିଲେ ସବ ସମ୍ଭାରେ ଯେ ।
ଜନ ଜାହସ ଲାଲମେଖ ଦଉଡ଼ ଗୃହଦମା କଡ଼ଆଲ ଯେ । ୨୭ ।

ହାଉଦା ଅମାରି ଅତ୍ୟ ସିଳୁଳ । ଚୌପର ପଲ୍ଲଙ୍କ ଝଣ୍ଡାମାଳ ।
ଗାଡ଼ି ଚଗଡ଼ ଶଗଡ଼ ପଲ୍ଲଣ । ଭାର ସମ୍ଭାର ସିନ୍ଧୁକାହିଁ ପୁଣ ସେ ।
ଖଟ ଚଉକି ପାଲିଙ୍କି ଯେ ।
ତମ୍ବୁ କନାଟ ନାନାଜାତି ବର୍ଣ୍ଣା ସମିଆନା ନୋହେ ଲେଖି ଯେ ।୨୮।
ତୋପ କମାଣ ତ୍ରିଶକଟ ଗୁଣ୍ଡ । ଜଞ୍ଜାଳ ଜମ୍ବୁର ନଳ ପ୍ରଚଣ୍ଡ ।
ପେଟକଠା ସାତହାତ ବନ୍ଧୁକ । ଗରନାଳବାଣ ସବୁହିଁ ଠେକ ସେ ।
ଝକମକ ଲଗା ନଳ ଯେ ।
ଗାରଦଏ ଧରି ବାହାରିଲେ ଯହିଁ ବ୍ରହ୍ମାଣ୍ଡ ଦିଅନ୍ତ ଜାଳ ଯେ । ୨୯ ।
ତେଲଙ୍ଗା ବାହାର ଧରି ଡ଼ଙ୍କୁଣ । ଯହିଁ ନ ଦିଶିଲା ସୂର୍ଯ୍ୟକିରଣ ।
ବାରଦ ଗୁଳି ଗୁଳା ଭାର ଭାର । ରଞ୍ଜକଯାମୁକ ନିଅଁ ପଥର ଯେ ।
ବେଲଦାର ନାନା ସଜ ଯେ ।
ସନ୍ଧିଜାତି ଭୂଲ ବନାଇଁ ବାହାର ହୋଇଲେ ବରକନ୍ଦାଜ ଯେ । ୩୦ ।
ଧସା ନାଗରା ନଉବତ ଝଡ଼ । ତୈଲଙ୍ଗିବାଜା ଗୃଙ୍ଗୁ ଗୁଡ଼ୁଗୁଡ଼ ।
ଢଢଧବନ୍ଦରେ ବଜାନ୍ତି ବାଦ୍ୟ । ନାମରଦ ଶୁଣି ହୋଏ ମରଦ ସେ ।
ଭେରୀ ରଣସିଙ୍ଗା ତୂରୀ ଯେ ।
କେହୁ ମୁହୁରଙ୍ଗ ରଙ୍ଗେ ବାଉଛନ୍ତି କେହୁ କରତାଳ ଧରି ଯେ । ୩୧ ।
ମୁଦି ଦୋକାନୀ ଅଟାର ବଜାରୀ । ପାନରି ପନଅରି କେତେ ମିଳି ।
କାଚରି ଶଙ୍ଖାରି ନୁହଇ କଳ । ଲକ୍ଷ ଲକ୍ଷ ଲଦାବଳଦ ଚଳ ସେ ।
ମୋଚି ଚମାର କମାର ଯେ ।
କୋଠି କୋଠି ହୋଇ ଲୁଟି ପାଇଁ ତହିଁ ଲୁଚ୍ଚା ଲୁଙ୍ଗୁରି ବାହାର ଯେ ।
ଅଗାଡ଼ି ଲସକର ଚଳିଗଲେ । ମଝିରେ କେ ଅପେ ଧଣ୍ଡା ଗାଡ଼ିଲେ ।
ରାଜାହିଁ ବାହାର ପଛେ ଦଇବେ । ଅରକ୍ଷନେ ଏହା ବର୍ଣ୍ଣିବା ଏବେ ।
ନୀଳାଚଳଚନ୍ଦ୍ର ଶକ୍ତି ଯେ ।
କବି ବ୍ରଜନାଥ ବଡ଼ଯେନା ରସେ ଏ ଚରିତ ରଚୟନ୍ତି ଯେ । ୩୩ ।

---

# ଦ୍ୱିତୀୟ ଛାନ୍ଦ

## ରାଗ—ପାହାଡ଼ିଆ କେଦାର ।

ସାଗ୍ରଫଉଜ ହେଲେ ତୟ୍ୟାର, ମୁସଦ୍ଦ ମୁସା ହେଲେ ବାହାର, ପାଗା ସୁଆର କ ଜମାଦାର, କ ସରଦାର ଯେ । ଯେ ଯାହା ମୁଗ୍ତବ ସମ୍ଭାର, ଦୌଲତ ଘେନି ହେଲେ ହାଜର, ମଜୁର କର ହୁକୁମ ପାଇ ଯାନ୍ତି ସତ୍ୱର ଯେ । କେହୁ ଚଢ଼ିଛୁ ତାଜବାଜୀ ଉପର ଯେ । ରଙ୍ଗ-ଅଙ୍ଗା ଅଙ୍ଗକୁ ଦିଶେ ସୁନ୍ଦର ଯେ । ଢ଼ାଲେକ ପୂର ବାମହାତରେ, ଭଲ କଷିଛି ଦକ୍ଷିଣ କରେ, ଲାଲପଗଡ଼ି ଭଲ୍ଲ ମାନଛି ଶିରକୁ ତାର ଯେ । ୧ ।

କେ ଅଛି ତାଜି ବାଜୀ ଚଢ଼ି, ଧର ନେଉଛି ଯୋଡ଼ାକୁ ଯୋଡ, ଇଶାର୍ କଲେ ମସ୍ତାକ ଛଡ, ଯିବ ସେ ଉଡ଼ି ଯେ । କେହୁ ଭୁଟୁକ ପିଠିରେ ବସି, ଢ଼ାଲ ବରଛି ଧରିଛି କଷି, କଣ୍ଟରେ ଛଣ ଦେଇଛି ଖୋସି, ଲମ୍ବିଛି ଦାଢ଼ି ଯେ । କେହୁ ଶୁଆର ହୋଇ ଅଣଆସୂଢ଼ ଯେ । ନେଡେ ସମ୍ଭା-ଳଲେ ସେ ନୋହେ ସ୍ତୁକତ ଯେ । ଫୁଫୁ ଶବଦ ମୁଖୁଁ ବାହାର, ବଇଳ ପର ଚରଣ ତାର, ହୁଅନ୍ତେ ଚୁଚୁକାର ପିଠିରେ ଠୁକୁଛି କର ଯେ । ୨ ।

ଗୁଲ୍ଲ ଚଲାଇ ଗୁଲୁଛି କେହି, କାହା ଚାଙ୍ଗଣ ଯାଉଛି ବହି, କେ ଘୋଡ଼ା ଅଡ ରହନ୍ତେ ଲେଢ଼ି, ଯୋଡ଼ି ଲଗାଇ ଯେ । କେଉଁଠି ଗୁଲେ ଦୁଇଗୋଡ଼ରେ, ସୁଆର ଖସିପଡବା ଡରେ, କଣ୍ଠକୁ ଧରି ଭିଡ ଦୁଢ଼ରେ ସମ୍ଭାଳ ରହି ସେ । କାହା ଘୋଡ଼ାକ ଦେଖି ଆଗରେ ଯେ । ଦଉଡ଼ି ମିଶି ଯାଆନ୍ତେ ଅତି ବେଗରେ ଯେ । ବାଗହାତକୁ ଅଳପ ମୋଡ଼ି, ଅଢ଼େ ସଲଖେ ଲଗାନ୍ତେ ଲେଢ଼ି, ପବନପରି ଗଲ୍ଲ ସେ ଉଡ଼ି, ସେହି ଲଗରେ ହେ । ୩ ।

କାହା ହୃଷାର ସ୍ୱନୋ ସଂସାର, କମ୍ପି ଉଠୁଛି କେହ୍ନ ବିସାରି, ଫଣି ଛନ୍ଦକେ କେ ବାଜି ଗାର, ପରି ଗଢିରେ ଯେ । ଜଳଭଉଁରି ପରି କେ ଖର, ଫେରି ପଡ଼ଇ ଅତିପ୍ରଖର, ବାମ ଦକ୍ଷିଣେ କରଇ ଗତି, ଦୁଷ୍କମତରେ ସେ । କେହ୍ନ ନାଟୁଆ ପରି ଦଣେ ଗାତରେ ଯେ । କାହାଚରଣ ଥୟ ନୋହେ ଖିତିରେ ଯେ । କେ ବନ୍ଧେ ଅଛେ ଗ୍ରୀବାକୁ ମୋଡ଼ି, ଡ଼େଇଁ ଯାଉଛି ଯୋଡ଼ିକି ଯୋଡ଼ି, କେ ସ୍ରୋତ ନଦୀ ନାବ ପରାୟେ ଗୃହ୍ଲି ରୀତିରେ ଯେ । ୪ ।

ଅତ୍ୟନ୍ତ ମତ୍ତମାତଙ୍ଗକୁଳ, ଚଳନ୍ତ ଧୀରେ ହୋଇ ପ୍ରବଳ, କି ସେ ପ୍ରବଳ ପର୍ବତ ମାଳ, ମାଳ ସଂକୁଳ ଯେ । କିବା ଧରଣୀ-ତରୁଣୀ ଗଳ, ଦୁକୂଳ ପିନ୍ଧି ଦଶେ ମଞ୍ଜୁଳ, କି ସେ ଅକାଶୁ ଛାଡ଼ି ମଡ଼ୁଛି ଜଳଦଜାଳ ଯେ । ଏହି ସମୟେ ମଦଜଳ ବରଷେ ଯେ । ଅବଲୋକନେ ଅଭ୍ରସୁଛି ମାନସେ ଯେ । ପୁଣି କି ସିନ୍ଧୁ ମନ୍ଥିଲେ ଦେବେ ସିନ୍ଧୁର କୂଳ ଜନମି ରବେ ଅସଂଖ୍ୟ ହୋଇ ଅସୁଅଛନ୍ତି ଅତି ହରଷେ ଯେ । ୫ ।

କେଉଁ ହସ୍ତୀକି ମୋତିଝାଳର, ମାନିଛି କାହା ମୁଣ୍ଡେ ସିନ୍ଦୂର, ଘଣ୍ଟି ଘାଗୁଡ଼ି କାହାର ଯୋଉହସ୍ତ ବିଶନ୍ଧ ଯେ । ପ୍ରବଳ ଭୁଙ୍ଗ କେଉଁ ମାତଙ୍ଗ, ରଙ୍ଗ ସଜରେ ସାଜିଛି ଅଙ୍ଗ, ଗୃଳକ୍କ ତାର ଗଙ୍ଗାତରଙ୍ଗ ଯୋଗିବା ମାନ ଯେ । କେଉଁ ଗଜରାଜର ବସନ୍ତ ସଜ ଯେ । ପରୁ ଭୂଷଣେ ଅତି ତୋର, କା ତେଜ ଯେ । ତାହାଙ୍କ ମତ୍ତଗତରୁ କର, ବଗୃର ହୋଏ କଷ୍ଟେ ବଇରକୁଳ-କମଳବନକୁ ଦଳି ଦେବ ଏ ଅଜ ଯେ । ୬ ।

ଏହି ସମୟେ ଗଣକ ଯାଇଁ, ସାଏତ ଧରି କହିଲା ଏହି, କ୍ଷଣି ପ୍ରୟାଣ କରିବେ ବୀରବରକେଶରୀ ହେ । ନେପାଳଦେଶ ଜାତ ସୁନ୍ଦର, ଅମାର କଷି କଲ୍ଲ ହାକର, ତହିଁ ଅରୋହି ରାଜା ଚେମଣାବାବୁ ବାହାର ଯେ । ଗୃର ପାଟୁଣେ ପାଗା ସୁଅର ଘେରି ଯେ । ...ନକାଦା ସିପାହିମାନେ

ବାହାର ଯେ । ଲକ୍ଷବନ୍ଧ୍ରେପଦାରେ ଡ଼ାକନ୍ତି, କହୁ ନୋହେ ଏ ଯେଉଁ ସମ୍ପତ୍ତି, କ ଅବା ଛଡ଼ପଡ଼ଲ୍ସ ସୁରନଗର ଶିରୀ ହେ । ୭ ।

ବରଷାକାଳ ନଦୀ ପସ୍ୱଇ, ବାଟେ ଅବାଟେ ଗଲେ ସେ ବହୁ, ଦଶ କୋଣରେ ରହିଲ୍ଲ ନାହିଁ ତରୁ ଭୂଣହିଁ ଯେ । ଚଳନ୍ତେ ତାଙ୍କ ଚରଣ ଘାତେ, ମସ୍ତି ସମାନ ହେଲେ ପର୍ବତେ, ପିଇପିବାରେ ଶୁଖିଲେ କେତେ ପୋଖରୀ ନଈ ଯେ । ପଥରହିଁ ରହିଲ୍ଲ ନାହିଁ ପଥରେ ଯେ । କାହା ଧୂଳି ରହିବ ଅବା ଏଥିରେ ଯେ । ଧୂମାକ୍ତ କର ମୁଲକ ଯାକ, ଧନ କାଞ୍ଚନ ଲୁଟି ଅନେକ, ଯାଇଁ ପଡ଼ିଲେ ଷାଠି ବାଟି (୧) ବଲ ଭିତରେ ଯେ । ୮ ।

ସ୍ୱଜନମଣି ପୂର୍ବରୁ ଜାଣି, ଅଗାଧପାଣି ଜଳ କମାଣି, ପାଷାଣ କାନ୍ଥ ସଜାଡ଼ ପୁଣି ମୁରୁଚ୍ଚ କର ଯେ । ଗୁଣ୍ଡ ବାଜିବା ସ୍ଥାନକୁ ହେଳ, ଭଣ୍ଡି କାଙ୍ଗୁଲ ଅଛନ୍ତି ସାଜ, ଚଣ୍ଡିପ୍ରସାଦ ଗୁଣ୍ଡକୁ ଖଞ୍ଜିଛନ୍ତି ବଗୁଚ ଯେ । କାହିଁ ମୁଲକ ମଇଦାନ ତୋପକୁ ଯେ । ସଜ କରଅଛନ୍ତି କୋଶେ ଧାପକୁ ଯେ । ଅଲପ ପାଛ କେଉଁ ମୁଣ୍ଡକୁ, ଲୁଚିଅଛନ୍ତି ଖାଲ ମୁଣ୍ଡକୁ, ମଜଡ଼ା ଠେକଛନ୍ତି କାହାର ଉଇମାପକୁ ଯେ । ୯ ।

କେଉଁ ମୁରୁଚ୍ଚଭିଡ଼ରେ ନଳ, ସଜାଡ଼ଛନ୍ତି ଧାଡ଼କ ଧାଡ଼, ଲୁଚିଅଛନ୍ତି ଲ୍ଲଛଲେ ଉଡ଼ିଯିବ କଉଡ଼ ଯେ । କାହିଁରେ ସିପା ଲଗାଇ ଭିଡ଼ଛନ୍ତି, ଜଜାଲ ଯୋଡ଼କ ଯୋଡ଼, ଅର୍ଦ୍ଧ କୋଶରେ ବାଜଲେ ଝଡ଼ପଡ଼ିବ ଘୋଡ଼ୀ ଯେ । ରୂପା କାହିଁରେ ପେଠକଟା କମାଣ ଯେ । ତାର ଫିଟିଲେ ଅଛି ଏହି ପ୍ରମାଣ ଯେ । କୋଶେ ସରକ କ ତରୁ ଦାରୁ, କବା ପଥର କ ଅବା ମେରୁ, କ କଣ୍ଠ ନର ବାଜନ୍ତିକର ପୁସ୍ୱଏ ମାଣ ଯେ । ୧୦ ।

---

(୧) ଢେଙ୍କାନାଳର ନଜଗଡ଼ ଭିତରେଥିବା ପଶ୍ଚିମଦଳର ଜମି ( କୁଟୁଣିସ୍ନା ପର୍ବତ ତଳରୁ ତଙ୍କୁଣିସ୍ନା ସାହି ପର୍ଯ୍ୟନ୍ତ ସମସ୍ତ ଜମି ) ଷାଠିଏ ବାଟି ନାମରେ ଖ୍ୟାତ ।

କାହିଁରେ ଧାଉଡ଼ଅ ପହଣ୍ଡ, ଜଳାଭିତରେ ପକାଇ କାଣ୍ଡ, ବାନ୍ଧିବା ପାଇଁ ହୋଇଛୁ ମୁଣ୍ଡଲୁଅଣ ଭଣ୍ଡି ଯେ । କାହିଁ ତଙ୍କୁଶମାପକୁ ଅସି, କେତେବେଳରେ ଯିବେ ବା ପଶି, ବୋଲି ତଙ୍କୁଣଅଛନ୍ତି କଷି ଗୁନ୍ଥିବେ ଗଣ୍ଡି ସେ । ଅଣ୍ଟ କଣ୍ଠାରେ ମାର ବହଳପଟ୍ଟା ଯେ । ଦଗବାରଣ ଭିଡ଼ି ଗୋଟାକୁ ଗୋଟା ଯେ । କେହି ବର୍ଣ୍ଣିବା ଗଡ଼ଦୁଆର, ଶଙ୍କା ନୋହିବ ଅବା କାହାର, ଲଙ୍କାରେ ମାନ ଥିଲା ସଜାଡ଼ ଦଣ୍ଡମୁକ୍ତା ଯେ । ୧୧ ।

ଏହି ସମୟେ ଜଣାଏ ଚର, ଶ୍ରେ ମହାରାଜା ପ୍ରତାପବୀର, ଚେମଣା ବାବୁ ପଡ଼ିଲେ ତାର ସୈନ୍ୟ ଅପାର ଯେ । ମଣିମା ଦଣ୍ଡ କାହିଁ ଧରଣୀ, ଚଳୁ ତ ନାହିଁ ପଥର ପାଣି, ଦେଖିଆସୁଛୁ ମୁଁ ଏହିକ୍ଷଣି ଗଡ଼ ପାଶର ହେ । ପୁଣି ପୁଣି କହନ୍ତି ଅନେକଲୋକ ଯେ । ମହାରାଜା ବୁଡ଼ିଲା ନିଷ୍ଟେ ମୁଲକ ଯେ । କେ ବୋଲେ ନିଷ୍ଟେ ଗଲାଇଁ ଧରା, କେ ବୋଲେ ରାଜା ଭେଟିବେ ପରା, କେ ବୋଲେ କିଛି ନୋହିବ ମାରା ପଡିବେ ଲୋକ ଯେ । ୧୨ ।

ଏମନ୍ତ ଶୁଣି ସେ ନୃପମଣି, ଦୋପର ପରେ ଗୃହିଁ ତକ୍ଷଣି, କ ହଣେ ଗଜ ତୁରଙ୍ଗ ପୁଣି କେ ପାରେ ଗଣି ହେ । ଦେଖିଲା ଲୋକେ ହୋଇ କାତର, କହନ୍ତି ଘୋଟି ଅସେ ସାଗର, ଲୋକଚଳନ୍ତେ ବୋଲନ୍ତି ଦେଖ ତରଙ୍ଗପାଣି ହେ । ଗଜମାନଙ୍କୁ ବୋଲନ୍ତି ଏ ମଗର ଯେ । ଓଟ ନୁହନ୍ତି ଭାସୁଛନ୍ତି କୁମ୍ଭୀର ଯେ । ଯୋଡବା ଅଶ୍ବ ଗଢିକ ଗୃହିଁ, ବୋଲନ୍ତି ମୀନ ମାଆନ୍ତି ତେଇଁ, ଫେଣପରାଏ ମଣନ୍ତି ତହିଁ ଶ୍ବେତଚାମର ଯେ । ୧୩ ।

ଉଡୁଛନ୍ତି ଯା ଧଣ୍ଡା ବୈରଖ, ପୁଣି ବୋଲନ୍ତି ମଣିମା ଦେଖ, ଏ କେତେ କେତେ ଲହଡ଼ମାନ ଅସୁଛୁ ଉଠି ଯେ । ଗଡ଼ଣଗଡ଼ ଚଳବା ଗୃହିଁ, ସୋଲପ ସବୁ ମଣନ୍ତି ତହିଁ, ତାମ୍ବୁମାନଙ୍କୁ ବୋଲନ୍ତି ଦେଖ ବୋଇତ ଏହି ହେ । ଗୁଣ୍ଡମାନଙ୍କୁ ସର୍ପ ପରାଏ ମଣି ଯେ । ନଳମାନଙ୍କୁ କ୍ଷୁଦ୍ର ମୀନରେ ଗଣି ହେ । କେ ବୋଲେ ଅଚିହ୍ନ ହେଲି କି ବାଇ, ଯାହାତେ ସିନ୍ଧୁ ଗର୍ଜି ଅସଇ, ମିଶୁଅଛନ୍ତି କେତେ ନୃପତି ସଇତ ପୁଣି ହେ । ୧୪ ।

ମହାପ୍ରବଳ ଫଉଜ ଗୃହେଁ, କାହା ଧଇର୍ଯ୍ୟ ରହିଲା ନାହିଁ, କେହି ବସିଲେ ବିଷାଦ ହୋଇ ମସ୍ତକ ଗୃହିଁ ହେ । କେ ଅବା ତହିଁ ମନେ ବିଗୃରେ, ଅବଶ୍ୟହିଁତ ମରିବା ଥରେ,କେବଳ ହସ୍ତ ପିଟିବା କାଳ ହେବ କି ନାହିଁ ହେ । କେହୁ ବୋଲଇ ମରିବାର ପ୍ରମାଣ ଯେ । ଛାଡ଼ ଦେଲେ ବାଳବ ମୋର ଲକ୍ଷଣ ଯେ । କେ ବୋଲେ ଆଗୁଁ କହୁ କି ହେବ,ଯାହା କରିବେ ସେ ବଳଦେବ, ମନେ ହେଉଛୁ ଅଖଡ଼େ ଯିବ ସବୁ ପରାଣ ଯେ ॥

ଏମନ୍ତ ଶୁଣି ଯେ ନୃପବର, ବୋଲନ୍ତି ଏ ଯେ ଘୋର ସାଗର, ଘୋଟି ଅଛୁଛି କିଛି ବିଗୃର ନାହିଁ ମନର ହେ । ଜଣଙ୍କେ କର ପକାଇ କର, ବୋଲନ୍ତି ହେବ ମନ୍ଦରଗିରି, ମନ୍ଥି ଦେବ କି ଅଛି ବିଗୃର ମନେ ତୁମ୍ଭର ହେ । ଏହି ସିନ୍ଧୁ ମନ୍ଥନ କରିବା ଯେବେ ହେ । କେତେ ମଣି- ରତନ ମିଳିବ ତେବେ ହେ । କେବଳ ତୁମ୍ଭେ ସୁର ଅସୁର, ସବୁଯୋ ମତେ ଆଶ୍ୱାସି ଧର, କାଳକାଳକୁ କୀରତି ରହିଯିବ ଏ ଭବେ ହେ ।୧୬।

ଏମନ୍ତେ ବୋଲି ଉଠନ୍ତେ ଫୁଲି, ଫାଟିଗଲା କି ଶ୍ରୀଅଙ୍ଗ ଚୋଲି, ବୋଇଲେ କାଲି ବୁଝିବା ଗୃଲିଚଲିଣ ସବୁ ଯେ । ପ୍ରାଣକୁ ଆଶା ରଖିଛ ଯେବେ, କହୁଛି ଏତେବେଳୁଁ ସେ ଯାଉ, ମରିବା ଲୋକ ମୋ ପାଖେ ଥାଉ ଚେମଣାବାକୁ ଯେ । ତୁଛା ଛିଣ୍ଡାଉଥାଅ ଜଣକୁ ମୋଡ଼ ଯେ । କାଳ ଅଛି ଏତିକ ବେଳକୁ ମଡ଼ ଯେ । କେ ପାଡ଼ କେହୁ ମରଦ ଶଣ୍ଢା, ଏହି ଠାବରେ ଯଡ଼ିବ ସିନା, ଛାଡ଼ିଣ ଦେବା ଗୋବରୁ ସବୁ ପାଟ ଉପାଡ ଯେ । ୧୭ ।

ଶୁଣି ଏମନ୍ତ ବଚନ ତହିଁ, ଜଣେ ଜଣଙ୍କେ କର ପକାଇ, ସହି ନ ପାରି ବୋଇଲେ କେହି ଶକ୍ତସ ନାହିଁ ଯେ । ଖାମିନ୍ଦ ବୋଲି ବୋଇଲ ଏହା, ନୋହିଲେ ଜଙ୍କା ଯାଆନ୍ତା ସୁହା, କେବଳ ଗଣ୍ଡି ଦେଖିବ ମୁଣ୍ଡ ଦେଖିବ ନାହିଁ ଯେ । ଛାଡ଼ ଦେଖି ଏ ପାଡ଼ମାନଙ୍କୁ ଥରେ ହେ । ଗଡ଼ ଭିତରେ କାହିଁ ଲୁଚିଛ ଡରେ ହେ । ଗର୍ଦ୍ଦନ ମାର ପଛେ ଗୋସାଇଁ, ଏ

କଥା କେହୁ ପାରିବ ସହୁ, ରଙ୍ଗବଦନ ଅଙ୍ଗ ତାଙ୍କର କ୍ରୋଧରେ ଥରେ ହେ । ୧୮ ।

ଶୁଣି ସାନନ୍ଦ ନରଈଶ୍ୱର, ବୋଇଲେ ଏବେ ହେଲା ଗୋଚର, ଏହା ଶୁଣିବାପାଇଁ ପଡ଼ିଲା ସିନା କେବଳ ହେ । ପଇସା ଘରେ ନାହିଁ ଆମ୍ଭର, ସେହୁତ ଦଣ ବଂଶ ହଜାର, ନ ନେବେ ପୁଣି ଯୁଝିବା କଥା ହୋଇଲା ମୂଳ ହେ । ଆଜ୍ଞା କରି ବଜାଇଲେ ଶ୍ରୀପାଲଙ୍କିରେ ଯେ । ଯାଇ ପ୍ରବେଶ ଗଡ଼ ମୁରୁଜଦ୍ୱାରେ ଯେ । ପୂର୍ବରୁ ଜଗିଥିଲେ ତ ଲୋକ, ଯେଉଁ ଠାବକୁ ଯେଉଁ ପାଏକ, ଖଞ୍ଜି ରଖିଲେ ଗଡ଼ନାୟକମାନଙ୍କ ଠାରେ ଯେ । ୧୯ ।

କାହାକୁ ଗୃହଁ ବୋଲନ୍ତି ବାପା ମୁଖ ଶୁଖାଇ ଦେଇକୁ କପା, ଦେବ ସମୁଦ୍ର ଘୋଡ଼ା ଶିରୋପା ମୁକୁତା ଲୋଳ ରେ । କେତେବେଳକୁ ମରଦ-ପଣ, ଏହୁ ଠାବରେ ବୁଝିବା ଠାଣ, ଦେଖ ବସିଛୁ କେତେ କମାଣ ଜଞ୍ଜାଳ ନଳ ରେ । ଗୋଡ଼ ବଢ଼ାଇ ସେ କ ଡେଇଁବେ ଜଳ ରେ । ଅସୁର ତ ନୁହନ୍ତି ଦେବାକୁ ଗିଳ ରେ । ଘଡ଼ିଏ ମାତ୍ର ଅନାଅ କନା, ପୋଡ଼ିବା ଏକାବେଳକେ ସିନା, ଭଲା କେମନ୍ତେ କାଟିବ ନାହିଁ ଅମ୍ଭର ଗୁଳ ଯେ । ୨୦ ।

ଆର ମୁରୁଜ କଡ଼ିକି ଯାଇଁ, କହନ୍ତି କଛ ବଗୁର କାହିଁ, ପିଠି ଉପରେ ଅଛ ଯେ ମୁହିଁ ଥାଅ ନିଶ୍ଚିନ୍ତ ଯେ । ବାକ୍ସ ସେ ପଛେ ଫଡ଼କା ବାନା, ଯେତେ ହୋଇଲେ ଲଙ୍କା ସିନା, କଡ଼କା ରଖି କ କରିବ ନା ମୂଳ ହେମନ୍ତ ହେ । ବରଗି ଏ କ ଡେଣା ପାଇଲେ ଏବେ ହେ । କଳକାନ୍ତୁରେ ଅସି ଉଡ଼ପଡ଼ିବେ ହେ । କ ଅବା ତାଙ୍କ ଅଙ୍ଗ ପଥର, କାଟିବ ନାହିଁ ଅମ୍ଭର ତୀର, କେ ବକ କେହୁ ଶୃଗାଳ ଶଙ୍ଖା ଯିବ ଦଇବେ ହେ ।୨୧।

କାହା ମୁରୁଜ କଡ଼କ ଯାଇଁ, ପିଠିରେ ଠୁକ ବୋଲନ୍ତି ଭାଇ, ଏହୁ ସଲଖେ ଥିବୁଟି ଗୃହଁ ଅଇଲେ ବାହୁ ସେ । ହାତେ ତୋ ଅଛ ଯେଉଁ

ଜମ୍ବୁର, ପୋଡଗ୍ନ ଏକା ହୋଇଣ ଧୀର, ହାଟ ହୋଇଲେ ଲେଉଟି ତେଣେ ପଡ଼ିବ ଯାଇଁ ଯେ । ମନ୍ଦହାସେ କହନ୍ତି ପୁଣି କାହାକୁ ଯେ । ସବୁ ବେଳେ ତ ଠୁକୁଥାଉ ବାହାକୁ ଯେ । ଲୋକଙ୍କୁ ଗୃହେଁ ଛାଡ଼ି ଫୁଲାଇ, କହୁତ ଥାଉ କଣ ହେଲାଇ, ଦେଖିବା ଦେଖି କେତେ ଠାଣ ତୋ ମନ-ଲୁହାକୁ ଯେ । ୨୨ ।

ଏମନ୍ତ କଲେ ଖାତରଜଣା, ସୁଧାକରତ ବିନା ନସ ଭୂଷା ମରମକଷା ଯେଉଁ ପ୍ରଶଂସା, ଜୀବନ ଅଣା ଯେ । ଛାଡ଼ ସକଳେ କଲେ ହେମନ୍ତ, ଜଗି ରହିଲେ ଯେହ୍ନେ ଯେମନ୍ତ, ବଗୁର କଲେ ନୋହିବା ଭଳି ଏ ଲୋକ-ହସାରେ । ସରଦାର ଯନ୍ଧିରେ ଅପେ ନୃପଛ ଯେ । ମନ କଅଁଳ ହେଲା ପଥରମତି ଯେ । କ ଧନ ବୃଦ୍ଧ ଅଠପହର, ବାନ୍ଧ ରହିଲେ ଲୋକ କମର, ମୀନକୁ ବକ ଠାକୁଲାପରି ଜଗିଥାଅନ୍ତି ଯେ । ୨୩ ।

ଯେହ୍ନେ ମାଟିଲା ଯେଉଁ ଅହାର, ଅଙ୍କ ପ୍ରମାଣେ ହେଲେ ସଭ୍ବର, ପାଏକଲୋକେ ପାଇଲେ ପୁଣି ଯାଉଁଳ ପଡ଼ ଯେ । ଡାଲ୍ କଦଳୀ ବଡ଼ ଅଗୁର, ଘୃତ ନବାତ ଦଧି ଶାକର, ଯନ୍ଧିକା ଯାହା ମନ ବଳାଲା ନେଲା ସେ ଲୋଡ଼ ହେ । ଅନୁରୂପରେ ଦେଲେ ଗୁଳ ବାଦ ଯେ । ଗୃହଯାଖେ ନାଗବ ଚମକ ନାଦ ଯେ । ଅର ଛନ୍ଦରେ ବର୍ଣ୍ଣିବା ପୁଣି, ଯେମନ୍ତ ହେଲା ଯୁଦ୍ଧକାହାଣୀ, ବ୍ରଜନାଥର ଭରସା କୃଷ୍ଣ କମଳପାଦ ହେ । ୨୪ ।



# ତୃତୀୟ ଛାନ୍ଦ

## ରାଗ—ଚକ୍ରକେଳି

ଶୁଣ ସାଧୁଜନେ ତୋଷଚିତ୍ତରେ । ଏବେ ସମର ହେଲା ଯେମନ୍ତରେ ।୧।
ଗଡ଼ ପାଶରେ ଫଉଜ ପଡ଼ିଲେ । କେହୁ ଲଢ଼ିବା ଏ ବିଚାର କଲେ । ୨ ।
ବାଣ୍ଟି ହୋଇଲେ ତିନମୁକା ହୋଇ । ତିନ ବାଟରେ ବାହାରିଲେ ସେହୁ ।୩।
ଯେନି କଣ୍ଟମରାଜକୁ ସଙ୍ଗରେ । ଚଇତନ୍ୟ (୧) ଦାସ ଗଲେ ଅଗରେ ।୪।
ଅସ୍ତ୍ର କାଢ଼ି ସେ ବାଡ଼ ଛଡ଼ାଇ । ତେଲଙ୍ଗାଙ୍କୁ ଯେନିଗଲେ କଡ଼ାଇ ।୫।
ଏଣେ ସାର ଲସକର ତୟାର । ଅପେ ଚେମଣାବାବୁଏ ବାହାର । ୬ ।
ମର ଦେଉଳ(୨) ଉପରେ ଚଢ଼ାଉ । ବାଙ୍କେ ନାଗର ଧୂଧୂ ଧାଉ ଧାଉ ।୭।
ପାଞ୍ଚ ପିଅଦା ଢାଲ ତରୁଆର । ବାହାରିଲେ ଦଶ ବାର ହଜାର । ୮ ।
ଆଠ ଦଶ ହଜାର ହେଲେ ସଜ ! ଅତି ପ୍ରବଳ ସେ ବରକନ୍ଦାଜ । ୯ ।
ଯେନି ଭାଲୁଙ୍କିଆମାନେ ତକ୍ଷଣ । ପାଞ୍ଚ ସାତ ହଜାର ଗଲେ ପୁଣ ।୧୦।
ଗଡ଼ଦ୍ୱାର ସନମୁଖେ ଅପାର । ହେଲେ ବାହାର ବାଛଅଶୁଆର । ୧୧ ।
ହସ୍ତୀ ପଲ ପଲ କରି ଅଗରେ । ଚଳାଇଲେ ବନ୍ଧୁକ କାଣ୍ଡ ଉପରେ ।୧୨।
ଗୁଳି ବାରୁଦ ଗଡ଼ମାନ ଭରି । ଲଦାବଳଦ ନୋହେ ଲେଖା କରି ।୧୩।
ତୋପମାନ ଚଳାଇଲେ ପ୍ରବଳ । ଯୋଗୁ ମନ୍ଦାଣି ଆଠ ଦଶ ହଳ ।୧୪।
ଯେନିକମାଣ କନ୍ଧରେ ତୂଣିର । କେତେ ତୀରନ୍ଦାଜ ହେଲେ ବାହାର ।୧୫।
ହସ୍ତୀପରେ ଗଣ୍ଡିଆ ପେଟିଚିରି । ଓଟ ଉପରେ ଜଜାଲ ଜମୁରି । ୧୬ ।

---

**(୧) ଚଇତନ ଦାସ ଜଣେ ସ୍ୱଦେଶୀୟ ମଲ୍ଲ । ପ୍ରଥମେ ଢେଙ୍କାନାଳ ମହାରାଜାଙ୍କଠାରେ ଚାକିରି କରୁଥିଲେ । ତଦନନ୍ତରୁ ରାଜାଙ୍କ ସହିତ ମନାନ୍ତର ହୋଇ ମରହଟ୍ଟାଙ୍କ ଅଧୀନରେ ରହି ଯୁଦ୍ଧରେ ରାଜାଙ୍କ ବିରୁଦ୍ଧରେ କାର୍ଯ୍ୟ କଲେ ।**

(୨) ଢେଙ୍କାନାଳ ରାଜାମାନଙ୍କ ସମାଧିସ୍ଥାନ ।

ଆଗେ ବାଣ ହାଣାଣକୁ ଚଳାଇ । ଯହିଁ ଫଯାର ଅନ୍ଧାର ଦିଶଇ । ୧୭ ।
ତେଣେ ତେଲିଙ୍ଗାବଳଙ୍କ ସଙ୍ଗରେ । ଚଇତନ ଦାସ ଫୁଟି ଲଟାରେ ।୧୮।
ଅର୍ଦ୍ଧଅସ୍ତ୍ରରେ ହେଲେକ ବାହାର । ଏହିକାଳେ ସେ ହୋଇଲେ ଗୋଚର ॥
ଶଏ ପଞ୍ଚାଶ ଲୋକ ଥିଲେ ଜଗି । ଆଗେ ଅଖଣ୍ଡନଳ ଦେଲେ ଦାଗି ।୨୦।
ବାଳବନ୍ଧ କ ସମ୍ଭାଳେ ସରଡ । ଠେଲା ମାଇଲେ କ ଭୁଜେ ପର୍ବତ ।୨୧।
ସିନ୍ଧୁ ପର୍ଯ୍ୟନ୍ତେ ତ ଯୋଟି ଅସନ୍ତ । ତାଙ୍କ ବଳେ କ ଅଟକ ପାରନ୍ତ ।୨୨।
ପେଲି ପ୍ରବଳେ ଆଗସର ଗଲେ । ଯାଇଁ ଲୋକେ ହଜୁରେ ଜଣାଇଲେ ॥
ଅସ୍ତ୍ର ଫୁଟିଲେ ବରଗି ମଣିମା । କେତେ ଫଉଜ କ ଅବା ଗଣିମା । ୨୪ ।
କୋଇସାହିରୁ ଅଇଲେଣି ବଳ । ଆମ୍ଭେ ନ ପାରିଲୁଁ ଅଜ ଓଗାଳ ।୨୫।
ଏହା ଶୁଣି ଅଜ୍ଞା କଲେ ସ୍ୱଜନ । ଦେଖି ଅମ୍ଭ ଲୋକ ଯାଅ ବହନ ।୨୬।
ତୁମ୍ଭେ ଅଟକ ଥାଅ ମାନ ଯାଇଁ । ଅମ୍ଭେ ପଛେ ପଛେ ଯାଉଅଛଇଁ ।୨୭।
ଶୁଣି ଶୁରବୀରମାନେ ବାହାର । ଘେନ ଧାଇଁଲେ ଯେଝା ହତିଆର ।୨୮।
ଶ୍ରେଷ୍ଠ ରଡ଼ରେ ଶୁଭୁ ନାହିଁ କଛ । ଗୁଳି ବରଷା କେବଳ କରୁଛ ।୨୯।
ବୃକ୍ଷମାନଙ୍କରେ ନାହୁଁ ପତର । ଫାଟି ଯାଉଅଛ କାଠ ପଥର । ୩୦ ।
ଦାଗି ବନ୍ଧୁକ ହଜାର ହଜାର । ଦଣଦଗ କରନ୍ତ ଅନ୍ଧକାର । ୩୧ ।
ପେଲି ଅସୁଛନ୍ତ ସେହି ଧୁଆଁରେ । ଯାଇଁ ମିଳିଲେ ବୀରସରଦାରେ ।୩୨।
ଦୁଇ ବଳଙ୍କର ମେଣ୍ଟ ପଡ଼ିଲା । ଅତି ପ୍ରବଳ ଲଢ଼ାଇ ହୋଇଲା ।୩୩।
ଜଣ ଜଣକୁ ଘେରବନ୍ଦୀ କରି । ଚକୁଣିଆଁ ବେଢିଲେ ତିନ ଗୃହି ।୩୪।
ଆଡ଼ହାଣି ରହିଥିଲେ ସମ୍ଭାଳି । ପଶିଗଲା ମରମସ୍ଥାନେ ଗୁଳି । ୩୫ ।
ଜୀବ ଯିବାଯାଏ ନୋହି କସତ । ଫିଟୁଥିଲା ତାଙ୍କର ଖଣ୍ଡାହସ୍ତ । ୩୬ ।
ଜଣ ଜଣକେ ସେ ଦ୍ରୋଣ ସମାନେ । ରଣ ଯାଗ କଲେ ଅତି ସୁମନେ ॥
ଗୁଳି ଗଳଗଳିକ କା ହୃଦର । ତେବେ ବୋଲୁଛ ହଇ ମାର ମାର ।୩୮।
ଶ୍ରେଷ୍ଠ ବସିଲାକ କାହା ମୁଣ୍ଡରେ । ଖଣ୍ଡାହସ୍ତ ସେ ବହଇ ପ୍ରଖରେ ।୩୯।
କାହା ଗୋଡ଼ ଭାଜ ପଡ଼େ ଧରଣୀ । ଯାଇ ଘସୁଚ ମିଶୁଅଛ ହାଣି ।୪୦।

ଗୁଳି ଉପରେ ତ ଗୁଳି ବାଜଇ । ତେଣୁ ପ୍ରାଣପ୍ରୟାଣ ହୋଇଗଲା ।୪୧।
ବଳେ ରାଜା ମହେନ୍ଦ୍ର ବାହାଦୂର । ତେଲଙ୍ଗାଏ ଅଛନ୍ତି ଗହଣର ।୪୨।
ପାଣି ସିନା କାଟି ପାରେ ପାଣିକି । କାଠ ସେହିରୂପେ କାଟେ କାଠକୁ ॥
ଦେବତାଙ୍କ ଗତି ଦେବେ ଜାଣନ୍ତି । ଅସୁରଙ୍କ ମାୟା ଦୈତ୍ୟେ ବୁଝନ୍ତି ॥
ଦୁଇବଳ ହୋଇଲେ ମିଶାମିଶି । ଝଣ୍ ଝଣ୍ କ ମେଣ୍ ହେଲେ ଆସି ॥
ଅଡ଼ ଭୂଷି ଢଙ୍କୁଣରୁ ଢଙ୍କୁଣ । ତଡ଼ ଛାଡ ଦଅନ୍ତି ପୁଣ ପୁଣ । ୪୬ ।
ଫିଟି ଫିଟି ଛୁଟିକାଇ ଭୂଷନ୍ତି । କଟି ପାର ଅଣ୍ଟୁ ଅଇ ବସନ୍ତି । ୪୭ ।
ଯୋଖିରଖିଥାନ୍ତି ଅଖିଅଖିରେ । ଦେଖି ଦେଖି କେ ଡାକ ହାକ ମାରେ ॥
ଲାଖି ପଡ଼େ କାହା ହୃଦେ ଢଙ୍କୁଣ । ଆଖିବାଟେ ଛାଡ଼ ଯାଏ ପରାଣ ।୪୯।
କେଉଁ ଦୋସ ବ ବ ବୋଲି ଡାକଇ । ତେଇଁ ଢଙ୍କୁଣ ମଧ୍ୟରେ ଠୁକଇ ॥
ଅଡ଼େ ତେରଛ ଭୂଷିଦେଲା ନେଇ । ଫୁଟି କଙ୍କାଳ ପଡ଼ିଗଲା ମଧ୍ୟ ।୫୧।
କୃପା କଲେ ପ୍ରଭୁ ଚନ୍ଦ୍ରଶେଖର । ଲୋକ ବଳ ମାଇଲେ ରାଜାଙ୍କର ।୫୨।
ଯାହା ପ୍ରବଳ ହୋଇ ଆସୁଥିଲେ । ଆଗେ ନ ଆସି ଅଟକ ପଡ଼ିଲେ ॥
ଛିନ ପରସ୍ତୀ ହୋଇଗଲେ ରହି । ତଡ଼ ତଡ଼ ଅଗ ନଳ ଫିଟାଇ । ୫୪ ।
ପୁଣ ମଝି ଲୋକେ ଆଗ ହୁଅନ୍ତି । ସେହି ଛେକେ ଛେକେ ଲେଛ ଦଅନ୍ତି ॥
ପୁଣ ପଛ ଲୋକେ ହୋଇ ହାଜର । ଦାଗି ଦଅନ୍ତି ସେହି ତଂତର ॥
ଅଗ ଲୋକେ ପୁଣି ଗ୍ରେଠ ଫକାଇ । ବେଗେ ହାଜର ହୋଇଥାନ୍ତି ଯାଇ ॥
ଦଣ୍ଡେ ମାତ୍ର ନ କରନ୍ତି ବିଶ୍ରାମ । କଲେ ଦେବଙ୍କୁ ଦୁର୍ଲଭ ସଂଗ୍ରାମ ।୫୮।
ଗୁଳି ଗୋଟିଏ ନ ପଡ଼େ ତଳରେ । ଯାଇ ବସଇ କାହା କପୋଳରେ ॥
କାହା ଛାତିରେ କଙ୍କାଳେ କାହାର । କାହା ପେଟ ଫୁଟିଯାଏ ବାହାର ॥
କେଉଁ ଲୋକର ତଣ୍ଟି ଯାଏ ଫୁଟି । ଭାଙ୍ଗି ପକାଏ କାହାର ଛକାଠି ।୬୧।
ଯାଇଁ ବାଜଇ କାହାର ହସ୍ତରେ । ଛାଡ଼ ବନ୍ଧୁକ ଭାଜେ ସେ ଅସ୍ଥିରେ ॥
ଭାଙ୍ଗି ପକାଏ କାହା ଜାନୁହାଡ଼ । ସେ ଯେ ଧୂସୁରେ ହୋଇ ଲଡ଼ବଡ଼ ॥
କାହା ଥାନ ମୁଦସରେ ହାବୋଡ଼େ । ଫୁଲ ପରାଏ ସେହି ଝଡ଼ିପଡ଼େ ॥

କାହା ବଦନେ ଡେରଛେ ବାଜିଲ । ଫାଲେ ଦାନ୍ତ ପାଟିରୁ ଖେଳିଗଲା ॥
ଥୁଥୁ କରି ପକାଏ ସେ ରକତ । କଥା କହିବାକୁ ନୋହେ ଶକତ ।୬୭।
ବେଳବେଳକେ ପନ୍ଦର ସତର । କେଉଁ ଭୂଅରେ ଲୋକ ବାର ତେର ॥
କେଉଁଥର ଆଠ ଦଶ ପଡ଼ନ୍ତି । କେଉଁ ଭୂଅରେ ପଚାଶ ଝଡ଼ନ୍ତି । ୬୮ ।
ତେଡ଼େ ଫଉଜ କାଷ୍ଠମରାଜର । ପଡ଼ିଗଲେ କେତେ ନୋହେ ସୁମାର ॥
କେବା ବଞ୍ଚିଗଲା ଘାଉଆ ହୋଇ । ଖଣ୍ଡ ନୋହୁ ଗୋଟିଏ ମାତ୍ର ନାହିଁ ॥
ଲୁଡ଼ ଲୁଡ଼ ମଡ଼ା ପଡ଼ିଅଛନ୍ତି । ପଙ୍କ ହୋଇଲା ରକତରେ କ୍ଷିତି । ୬୯ ।
ଯେବା ପଛେ ଅସ୍ତ୍ରଥିଲେ ଭାଜିଲେ । କେତେ ତଳ୍ପୁଣ ନଳ ଛାଡ଼ି ଗଲେ ॥
ପାଗ ମଥାରୁ ଫିଙ୍ଗି କେ ପଳାଏ । କେବା ବାଙ୍କ କଟାରି ଫିଙ୍ଗି ଧାଏଁ ॥
କାହାପାଶେ ରାଜାଲୋକେ ମିଳନ୍ତେ । ରଖ ବୋଲି ତିରଣ ଧରେ ଦନ୍ତେ
କେଉଁ ବୀର ତହିଁ ହସ୍ତ ଚଳାଇ । ପ୍ରାଣ ଦେଲା କପଟ ଅଭି ନୋହୁ ॥
ଏହିରୂପରେ ପ୍ରହରେ ଲଢ଼ାଇ । ଶୂନ୍ୟେ ଉଡ଼ି ନ ପାରିଲେ ଚଢ଼ାଇ ।୭୬।
ଦଗ ନ ଦଶିଲା ଧୂଆଁ ହେବାରେ । କାଣି ପରି ଭ୍ରମ ହେଲା ଦବାରେ ।୭୭।
ବ୍ୟାଘ୍ର ମୃଗ ଆଦ ଗଲେ ପଳାଇ । ଭୟେ ଦୂରରେ ରହିଲେ ସେ ଯାଇଁ ।୭୮।
ପୂର୍ବେ ଲଙ୍କା ଲଢ଼ାଇ ଯା ଗୀତରେ । ଶୁଣୁଥାଇଁ ଏବେ ସେହି ମତରେ ॥
ଗଲା ରକତ ନଦୀ ପରି ବହି । ଗିରି ପରି ମଡ଼ା ପଡ଼ି ଦଶଇ । ୮୦ ।
ଦେଖାଗଲା ନାଚବାର କବନ୍ଧ । ଥାଉ ଥାଉ ନୟନ ହେଲା ଅନ୍ଧ । ୮୧ ।
ଯହୁଁ ବରଗି ହାରି ପଳାଇଲେ । ଜୟ କରି ରାଜନ ଲେଉଟିଲେ । ୮୨।
ଏଣେ ମୁରୁଗୁରେ ଗୁଣ୍ଡ ଦାଗନ୍ତେ । ଉଡ଼ିଗଲେ ଫଉଜ ଅବା କେତେ ॥
ଉଡ଼ିଗଲେ ବା କେତେ ଘୋଡ଼ା ଘୋଡ଼ୀ । କେତେ ତମ୍ବୁ କନାଥ ନେଲା ଉଡ଼ି
ଗୁଳା ଗୋଟିକେ ଦଶ ବିଂଶ ଯହୁଁ । ଉଡ଼ି ଯାଅନ୍ତି ତୁଳା ପ୍ରାୟେ ହୋଇ ॥
ସାରା ଫଉଜ ପଡ଼ିଗଲା ହାଲ । ସବୁଠାରେ ଘାଉଆ ପଲ ପଲ । ୮୬ ।
କେତେ ମଲେ ସେ ହେଲା ନାହିଁ କଳ । ଯହୁଁ ଶୁଗ୍ରିବ ହେଲା ହାଲହୋଲ ॥
ଗୁଳା ଦାଉରେ ସେଠାରେ ନ ରହି । ସୈନ୍ୟ ପଡ଼ିଲେ କୋଣେ ଧୁଞ୍ଚିଯାଇ

କେହୁ ବୋଲଇ ହେଲା କ କରମ । ଏତେ ଅନର୍ଥ କଲା ରଜାରାମ । ୮୯ ।
କେହୁ କାନ୍ଦ ବୋଲେ ମଞ୍ଜୁ କ କଲା । ଢେଙ୍କାନାଳରେ ବଂଶ ବୁଡ଼ାଇଲା ॥
କେହୁ ବୋଲଇ ହାହା ବେଟା ମେର । କସେ ଗୁନ ବସୋରୁ ମଇଁ ତେର
କେହୁ କାନ୍ଦଇ ହାହା ମେର ଭାଇ । କଅ ଗୁନା ମୁଝୁକୁ ଛୋଡ଼ଗଇ । ୯୨
କେହୁ ବୋଲେ ହା ବେଟି ମେର ଛୋଟି । ହାହା ଜୁଆଇଁ ଭୟା ଶିର କାଟି
କେ ବୋଲଇ ହଜାରଠଙ୍କା ଘୋଡ଼ୀ । ଗୟା ମେର ତୋପକ ମାରେ ଉଡ଼ି ॥
କେ ବୋଲଇ କଅ କଅ ଖୋଦାଇ । ଢାଲ ଫୁଟି ଯୋ ଗିର ମେର ଭାଇ ॥
କେ ବୋଲଇ ଘାଏ ଲହୁଆହାଥି । ଗୁଲା ଲଗି ପାଓଁ ମୁଁ ଯାତ ଯାତ ॥
କେହୁ ଛାତି ପରେ କର ଠୁକଇ । ହାହା ମେର ବାବା ବୋଲି ଡାକଇ । ୯୭
କେହୁ ଭୂମିରେ ପଡ଼େ ହାହା କରି । କେହୁ ଗୋଡ଼ୁ କାଣ୍ଡଫଳ ଉତାରି ॥
ତହିଁ କାହାକୁ ଖୁଅଇ ମାଜୁମ । ଗୁଲା କାଢ଼ନ୍ତେ ଯାଉଅଛୁ ଝାମ । ୯୯ ।
କେହୁ ଶ୍ୱଶୁରକୁ ମାଟି ଦେଉଛି । କେହୁ ମଉଲାକୁ ନେଇଁ ଦହୁଛି । ୧୦୦।
କେହୁ କାଣ୍ଡକାଢ଼ି ଘାଅ ସିଆଇଁ । କାହା ଘାଅ ରକତ ନ ରହଇ ।୧୦୧।
ଏହିରୂପେ ସର୍ବଲୋକେ ଅକୁଳ । ଯହୁଁ ବୃହୁଁ ବ ନୟନେ ଶୋକଜଳ ॥
ବସି ପାଅନ୍ତି ଅଠାର ବଜାଣି । ଅଜ ବାଢସରକ ନେବେ ମାରି । ୧୦୩ ।
କେ ବୋଲଇ ଚାଲ ଯିବା ପଳାଇ । କେ ବୋଲଇ ବାଟ ପାଇବା ନାହିଁ
ଠାବେ ଠାବେ ଜଗିଛନ୍ତି ଚୂହାଡ଼ । ଭାଙ୍ଗି ପକାଉ-ଛନ୍ତି ହାତ ଗୋଡ଼ ॥
କେ ବୋଲଇ ମୁଁ ଶୁଣିଲି ଭାଇରେ । ଏହୁ ଲଠାକାନ୍ତେ ଛନ୍ତି ରହିରେ ॥
ଖାଲି କାଣ୍ଡ ଧନୁ କରେ ତାଙ୍କର । ଛପି ପଡ଼ିଛନ୍ତି ପାଅହଜାର । ୧୦୭।
ଜହ୍ଲବୁଢ଼ ସରକ ସେ ମିଶିବେ । ଅଜ ଗୋଟିକଠାରୁ ଦାଇ ଦେବେ ॥
କେ ବୋଲଇ ଚୁପିଅ ନେବା ପାଇଁ । ଜାଣି ମରିବାକୁ ଅସି ଅଛଇଁ ॥
ରାଜା ରାମରି ଝାଡ଼ନେଲେ କନା । ପ୍ରାଣଦାନ କ ବୃଷ୍ଟି ଦେଲେ କନା ॥
ଏଡ଼େ ଯିଙ୍ଗିତ କାହୁଁ ନାହୁଁ ରାଜା । ଯିବ ଚେମ୍ଣା ବାବୁ ପାଇ ଲଜ୍ଜା ॥

କେତେ ଏହିମତେ କେ ତା କହିବ । କହିଲେତ ଲଙ୍କାପୋଥି ହୋଇବ ॥
ଆର ଛାନ୍ଦେ ପୁଣି କାହୁଁ ଚରିତ । ଗୀତେ କହିବ କବି ବ୍ରଜନାଥ । ୧୧୩ ।



# ଚତୁର୍ଥ ଛାନ୍ଦ

ରାଗ—କଲ୍ୟାଣଆହାରୀ

ଏମନ୍ତେ ରସିକ ଅତି କଉତୁକ ଚରିତ କହୁଥାଇଁ ଶୁଣ
ଦାଗିଲେ ବରଗି ଗଡ଼ଦ୍ୱାର ଭଙ୍ଗିବାକୁ କେତେମତେ କମାଣ ।
କେ ଗୁଳା । କବାଟରେ ଯାଇ ବାଜିଲା ।
କେଉଁ ଗୁଳା ଭିଡ଼ପଟା ନେଲା ତଡ ପଡ଼ କେତେ ଗଛ ଭାଙ୍ଗିଲା । ୧ ।
କେଉଁ ତୋପ ଫିଟି ଯେନଗଲା ଗୃଟି ଘୋଡ଼ା ଦୁଇ ଗୃରି ଗୋଟାକୁ ।
ଉପରେ ଉପରେ ଗୃଲି କେଉଁ ଗୁଳା ଗରଜାଇ ଦେଲା ଲଟାକୁ ।
କେ ବାଜି । ଭାଙ୍ଗି ପକାଇଲା ପଥରେ ।
କେଉଁ ଗୁଳା ଏଡ଼େ ଧାପ ଦେଇଛି ଯେ ଗୃଲି ହେଉ ନାହିଁ ପଥରେ
କେ ଗୁଳା ବାଜିଲା ମୁଣ୍ଡ ଯେନ ଗଲା ଭିଡ଼ ଉପରୁ ଭିଡ଼ଆର ।
କେଉଁ ଗୁଳା ଆସି ପଶିଯାନ୍ତେ ଲାଗି ଗଲା ତେଡ଼େ ବଡ଼ ଦୁଆର ।
ଏରୂପେ । ଦାଗିଲେ ଅନେକ କମାଣ ।
କେ ଅବା ଲାଗିଲା କେହୁ ଉଡ଼ି ଗଲା ଭୟୁ ପାଇଲେ ପାଇକାଣ । ୩ ।
ଚତୁରମଣି ଶିରୋମଣି ନୃପତି ପ୍ରତି ମୁକୁଟୁ ବୁଲିଯାଇ ।
ଏମନ୍ତ ଅନୁମାନ କରି ବସାଇ ତୋପମାନ ଦେଲେ ଦଗାଇ ।
। ଗୋଟିଏ । ଗୁଳା ନ ଛାଡ଼ଇ ତଳକୁ ।
ବାଜି ଦଣ୍ଡୀ ଶ ଲୋକ କରି ନାଶ ମନ୍ତ୍ରି ଦେଲା ତେଡ଼େ ବଳକୁ । ୬ ।
ନାନା ନଟକୁଟ ଛଟପଟ ହଟ ଉପାୟୁ କଲେ ତାହାଙ୍କର ।
ଶତୁଙ୍ଗ ଖୋଳା ଲୋକ ଅଙ୍ଗ ଦଶେ ଯେବେ ଗୁଳି ବାଜଇ ତଡପର ।

ମୁରୁଗୁ । ବନାଇବେ ଅବା କ କର ।
ଯଦ ଦଣେ ମୁଣ୍ଡ ଦେହୁ ଠାକୁ ଗୁଣ୍ଡ ମାରନ୍ତ ନଳି ଯୋଖି ଧର । ୫ ।
ଅଲ୍ପ କର ବାବୁ ଭଲ୍ଲ ବଗୁର ଯେ ଚଲାଇ ଅସନ୍ତେ ସାହସେ ।
ଶହ ଶହ ହୋଇ ଜମୁର ଛୁଟଇ କ ମଜା ଦୋହିଅଇବେ ଯେ ।
ଜଲକା । ଦେଖିଲେ ହୁଅନ୍ତ ଜଳକ ।
ନଳକ ଦାଗି ଦେବାବେଳେ ନୃପତି ସବୁଙ୍କୁ ଲାଗଇ ଝେଲକ । ୬ ।
ଯେଣେ ବାହାରଲେ ଜଣେ ହେଲେ କାଂଣ୍ଡ ଗୁଳ ବାଙ୍କ ପଡ଼ ମରଇ ।
ହଗି ଗଲବେଳେ ଜଗି ବସିଥାନ୍ତ ସାଙ୍ଗୀସାବେଲ କରେ ନେଇ ।
ଦଶିଲେ । ଗଛବୁଦା ତାଙ୍କୁ ବୁହାଡ଼ ।
ଗାଧୋଇବାଠାରେ ଧରଥାନ୍ତ କରେ ଲୁହାଠେଙ୍ଗା ଭଲ ଦୁଆଡ଼ । ୭ ।
ଏହରୂପେ ବନ୍ଦ କୋହ ତେଡ଼େ ବଲ ଫଉଜ ପଡ଼ଗଲେ ବନ୍ଦ ।
ଭବାନୀ କାଲେକୁ କେ ସ୍ୱଜାସ୍ୱମକୁ ଚଉଧୁସ୍ୱଳ ହେବା କନ୍ଦ ।
ଚେମଣା । ବାବୁ ବରସମତ ହୋଇ ।
ଏହରୂପେ ବଡ଼ ହରଣେ କହଲେ ସବୁ ସଦ୍ଦାର ଡକାଇ । ୮ ।

( ହନ୍ଦୀଭାଷା )

ଅବ ସବ ସରଦାର ବଗୃରେ ।
ଏକଠୋ ରଗଡ଼ ହାତ ନହିଁଅୟୁ। ଭଲେ ଭଲେ ତୁମ ୟୁାରେ । ୦ ।
ତାଲ ତାଲଭର ପଇସା ଲେକେ କୋଇ ଅବ ମାର୍ ଦୋ କାଲ୍ଲା ।
ଥୋଡ଼ା ଗଡ଼ ଠୁକଲଡ଼ନେ ନାହିଁ କ୍ୟା କରୁଁ ଯାକେ ବଙ୍ଗଲ । ୧ ।
ସ୍ୱଜା ମୁଝେ କ୍ୟା କହେଗା କାମ ନହିଁ ବଡ଼ ଥୋଡ଼ା ।
ଲଖ ଫଉଜ ଅବ ସାଥ ହେ ମେସ୍ୱ କେତା ହାଥନ ଡୋଡ଼ା । ୨ ।
ଯାଡେ ଯାଡେ କେତା କାଲ୍ଲା ଲଥ ଡୋପକେ ମାରେ ।
ବଣ୍ ବଣ୍ ବେଜ ସଡଗଇ ପଡକେ କ୍ୟା କହୁଁ ଭଇ ତୁମାରେ । ୩ ।

ଲକ୍ଲେ ସବ୍ ତୁମୁ ଗାଁଓ ଉଠାକେ ମାରନେକୁ କଲକତା ।
ଜୋର ନ ପାଏ ଉଠାଁଓ ନ ଚିଲ୍ଲ ପାହାଡ଼ତୋଡ୍ ମମତା । ୪ ।
ମୁଛ ଦାଢ଼ି ପର୍ ହାଥ୍ ରଖୋମତ୍ କୁଛୁ କାମ ନହିଁ କିଆ ।
ବାତ ଶୁନି ବ୍ରଜନାଥ କହେ ସରଦାର ଲୋକ ଜଲଗିୟା । ୫ ।
ସରଦାରମାନେ ହଜୁର ବଚନେ କମ୍ପିଲେ ପଲଗ ପରାଇ ।
ବୋଇଲେ ଶୁନୋ ରାଜା ତୁମ୍ କହୋ ଯାହା ମେରା ଗୁଣାକେସେ ଭାଇ
ବ୍ରାହ୍ମନା । ରାଜାରମାସବୁ ଡୁବଯାୟା ॥
କାୟା କାମ୍ ବଦ୍ କାୟା ହୋଓ ରାଜା ସାରଫଉଜ୍ ଝୁକାଦୟା । ୭ ।
ସବ୍ ଦୁନିଆଙ୍କ ଖୁଦାଇ ତୁମିହୋ ତୁମାର ସବେହେଁ ଖୁଦାଇ ।
ବନା ଅଗ୍ମେ ଅଁଜ ଘୋଡା ବହେ ଯୋନ ଫତେ ହୁଆ କାମ ଭାଇ ।୮
ହାମି ଯୋ । ତୁମାରି ତହସିଲ ବଡ଼ି ତୁମାରପାଇଁ ଶିରଦଆ ।
ବଡ଼ଭୋରସେ କାମଦେଖୋ ହାମାରା ଝଣ୍ଡେସାଏ ନେଉଁ ମୁରୁଚ୍ଛ ।୯।
ଏମନ୍ତ କହି ସରଦାର ମଜୁରା କରି ବାହାରିଲେ ବସାକୁ ।
ପଁହରେ ରାତି ଥାଉଁ ଅଣ୍ଟା ବାନ୍ଧିବୁଁ ମୂଳ କଲେ ଏହି ଭାଷାକୁ । ୧୦ ।
ଭବାନୀ । କାଲେ ମନ୍ଦିବର ଉହିଁରେ ।
ବଗୃରେ କାମହିଁ କିଛି ହେବ ନାହିଁ ମାରିବେ ପାନ୍ନ ସରଦାରେ ।୧୧
ଏ ତ ରାଜପୁତ ରୋହିଲ୍ଲ ମୁଗଲ ବଘେଲ ଚୁହାଣ ପଠାଣ ।
ଗଡ଼କୁ ପଶି ଝାସି ଯିବେ ସେ ଜଳ ଲଙ୍ଘିବେ ନାହିଁ କେହି ପୁଣ ।
ମାରିବେ । ରାଜା ଖବରଦାର ବଡ଼ ।
କେତେ ଲୋକ ମଲେ ଏବେହେଁ ମରିବେ ମାତ୍ର ଛୁଟିବେ ନାହିଁ ଗଡ଼ ॥
ଏମନ୍ତ ବଗୃରି ଦେଲେ ମନା କରି ସରଦାରକୁ ଏହା କହି ।
ବଗୃରି ଲଢ଼ିଲେ କାମ ହେବ ସିନା ଲୋକ ମାରିବା କାହିଁପାଇଁ ।
ଦ ଦିନ । ଅଉ ରହି ଥା ସବୁର କରି ।
ଧମାଧମ ଧାଡ଼ିୟାକୁ ରାଜାଙ୍କ ଛାମୁକୁ ପେଷିଲେ ସେ କହି । ୧୩ ।

ମୁରୁଗୁ । ବନାଇବେ ଅବା କ କର ।
ଯଦ ଦଶେ ମୁଣ୍ଡ ସେହ୍ନ ଠାରୁ ଗୃଣ୍ଡ ମାରନ୍ତ ନଳ ଯୋଣି ଧର । ୫ ।
ଆଲ୍ଲ କର ବାବୁ ଭଲ୍ଲ ବଗୃର ଯେ ଚଳାଇ ଅପନ୍ତେ ସାହସେ ।
ଶହ ଶହ ହୋଇ ଜମୁର ହୁଡଇ କ ମଡ଼ା ଗୋଟିଆଇବେ ସେ ।
ଜଲକା । ଦେଖିଲେ ହୁଅନ୍ତ ଜଳକ ।
ନଳକ ଦାଗି ଦେବାବେଳେ ନୃପତି ସବୁଙ୍କୁ ଲାଗଇ ଭେଲକ । ୬ ।
ଯେଣେ ବାହାରଲେ ଜଣେ ହେଲେ କାଣ୍ଡ ଗୁଳ ବାଜ ପଡ଼ ମରଇ ।
ହଗି ଗଲବେଳେ ଜଗି ବସିଥାନ୍ତ ସାଙ୍ଗୀସାବେଳ କରେ ନେଇ ।
ଦଣିଲେ । ଗଛବୁଦା ତାଙ୍କୁ ରୁହାଡ଼ ।
ଗାଧୋଇବାଠାରେ ଧରଥାନ୍ତ କରେ ଲୁହାଠେଙ୍ଗା ଭଲ ଦୁଆଡ଼ । ୭ ।
ଏହରୂପେ ବନ୍ଧ ନୋହ ତେଡ଼େ ବଲ ଫଉଜ ପଡ଼ଗଲେ ବନ୍ଧ ।
ଭବାନୀ କାଳେକୁ କେ ସ୍ତଜାସ୍ତମକୁ ଚଉଧୁରୀଙ୍କ କେବା ନନ୍ଦ ।
ତେମଣା । ବାବୁ ବରସମଝ ହୋଇ ।
ଏହରୂପେ ବଡ଼ ନବରଶେ କହଲେ ସବୁ ସର୍ଦ୍ଦାର ଡକାଇ । ୮ ।

( ହୃନ୍ଦୀଭଷା )

ଅବ ସବ ସରଦାର ବଗୃସେ ।
ଏକଠୋ ରଗଡ଼ ହାତ ନହିଁଆୟା ଭଲେ ଭଲେ ତୁମ ୟାସେ । ୦ ।
ତାଲ ତାଲଭର ପଇସା ଲେକେ କୋଇ ଅବ ମାର୍ ଦୋ କଲ୍ଲା ।
ଥୋଡ଼ା ଗଡ଼ ଟୁକଲଡ଼ନେ ନାହିଁ କ୍ୟା କରୁଁ ଯାକେ ବଙ୍ଗଲା । ୧ ।
ସ୍ତଜା ମୁଝେ କ୍ୟା କହେଗା କାମ ନହିଁ ବଡ଼ ଥୋଡ଼ା ।
ଲାଖ ଫଉଜ ଅବ ସାଥ ହେ ମେସ୍ତ କେତା ହାତନ ଘୋଡ଼ା । ୨ ।
ଯାତେ ଯାତେ କେତା କଲ୍ଲା ଲଥ ତୋପକେ ମାରେ ।
ବଣ୍ ବଣ୍ ସେଜ ସଡଗଇ ପଡକେ କ୍ୟା କହୁଁ ଭାଇ ତୁମାରେ । ୩ ।

ଲକ୍‌ଲେ ସବ୍ ତୁମୁ ଯାଓଁ ଉଠାକେ ମାରନେକୁ କଲକତା ।
ଜୋର ନ ପାଏ ଉଠାଂଓ ନ ଠିକ ପାହାଡ଼ତୋକ୍ ମମତା । ୪ ।
ମୁଛ ଦାଢ଼ି ପର୍ ହାଥ୍ ରଖୋମତ୍ କୁଛୁ କାମ ନହିଁ କଅ ।
ବାତ ଶୁଣି ବ୍ରଜନାଥ କହେ ସର୍‌ଦାର ଲୋକ ଜଲଗିଯା । ୫ ।
ସରଦାରମାନେ ନୃପ୍ତୁର ବଚନେ କମ୍ପିଲେ ପନ୍ନଗ ପରାଇ ।
ବୋଇଲେ ଶୁନୋ ରାଜା ତୁମ୍ କହୋ ଯାହା ମେରା ଗୁଣାକେସେ ଭାଇ
ବ୍ରାହ୍ମନା । ରାଜାରମାସବୁ ଭୁଡ଼ଯାଯା ॥
କାୟା କାମ୍ ବଦ୍ କାୟା ହୋଓ ରାଜା ସାରଫଉକ୍ ଝୁକାଦୟା । ୭ ।
ସବ୍ ଦୁନଅକ ଖୁଦାଇ ତୁମିହୋ ତୁମାର ସେରେହେଁ ଖୁଦାଇ ।
ବନା ଅଗ୍‌ମେ ଅଜ ଘୋଷା ବଢ଼େ ଯୋନ ଫତେ ହୁଅ କାମ ଭାଇ ।୮
ହାମି ଯୋ । ତୁମାର ତହ୍ୱମିଲ ବରୁ ତୁମାରପାଇଁ ଶିରଦଅ ।
ବଡ଼ଭୋରସେ କାମଦେଖୋ ହାମାରା ଝଡ଼େପାଏ ନେଉଁ ମୁରୁତୃ ।୯।
ଏମନ୍ତ କହୁ ସରଦାର ମଜୁରା କର ବାହାରଲେ ବସାକୁ ।
ପହରେ ରାତି ଥାଉଁ ଅଷ୍ଟା ବାନ୍ଧିବୁଁ ମୂଳ କଲେ ଏହୁ ଭାଷାକୁ । ୧୦ ।
ଭବାନୀ । କାଲେ ମନ୍ଦିବର ତହିଁରେ ।
ବଗୃରେ କାମହିଁ କାଛୁ ହେବ ନାହିଁ ମାରବେ ପାନ ସରଦାରେ ।୧୧
ଏ ତ ରାଜପୁତ ରୋହଲ ମୁଗଲ ବଦେଲ ଚୁହାଣ ପଠାଣ ।
ଗଡ଼କୁ ପଶି ଝାସେ ଯିବେ ସେ ଜଳ ଲଙ୍ଘିବେ ନାହିଁ କେହୁ ପୁଣ ।
ମାରବେ । ରାଜା ଖବରଦାର ବଡ଼ ।
କେତେ ଲୋକ ମଲେ ଏବେହେଁ ମରିବେ ମାନ ଛୁଟିବେ ନାହିଁ ଗଡ଼ ॥
ଏମନ୍ତ ବଗୃର ଦେଲେ ମନା କରି ସରଦାରକୁ ଏହା କହୁ ।
ବଗୃର ଲଢ଼ିଲେ କାମ ହେବ ସିନା ଲୋକ ମାରବା କାହିଁପାଇଁ ।
ଦ ଢନ । ଅଉ ରହୁ ଥା ସବୁର କର ।
ଧମାଧମ ଧାଉଯାକୁ ରାଜାଙ୍କ ଛାମୁକୁ ପେଷିଲେ ସେ କହୁ । ୧୩ ।

ଏଡ଼େ ଅବସ୍ଥାର କାହିଁକି ତୁମ୍ଭର ହାକିମଠାରେ ଶପୂ ଭ୍ରବ ।
ଏବେହେଁ ଅମ୍ଭ ଭ୍ରଷା ମାନ ଦ ଦନ ଗଡ଼ ତୁମ୍ଭର ଛାଡ଼ଯିବ ।
କଲଣି । ଏବେ ତୁମ୍ଭେ ଯେଉଁ ଗୁଡ଼ାକ ।
ଅଜଯାଏଁ ଏହା କେହ୍ନ କର ନାହିଁ ରଖିଲ ଓଡ଼ଶା ଦମାକ୍ । ୧୪ ।
ମୁଦାଇ ଆପଣ ଚଢ଼ିଛନ୍ତ ପୁଣ ଯିବେ କ ଗଡ଼ ଫତେ ନୋହ୍ନ ।
ସାବାସ ତୁମ୍ଭର ପାତସାରେ ତତ୍ତୁଅର ବାନ୍ଧ କଲ ଲଢ଼ାଇ ।
ଅଜହିଁ । ଗଡ଼ ଅନ୍ତର ହୋଇଯିବ ।
ଏମନ୍ତେ କାଲ ଫଉଜ ଉଠିଯିବେ ହାକିମ ମର୍ଯ୍ୟାଦା ରହ୍ନବ । ୧୫ ।
ଶୁଣି ନରପତ ନ କଲେ ସମ୍ମତ ବୋଇଲେ ସେ ସିନା ଚତୁର ।
ବିଶ୍ୱାସୀ ଯେମନ୍ତ ଦଗା କରନ୍ତ ସେ ପାଠପଢ଼ା ଅଛ ମୋହର ।
ଜାଲାଦ୍ରି । ଚନ୍ଦ୍ରମାକରଣ ପାତକ ।
ତମ ଦଳ ନାଶ ବ୍ରଜନାଥ ଦାସ ଘେନ ହେ ରସିକ ବିବେକ । ୧୬ ।

---

## ପଞ୍ଚମ ଛାନ୍ଦ

### ରାଗ—ଅଷାଢ଼ଶୁକ୍ଳ

ଏଥୁ ଉତ୍ତାରେ ଶୁଣ ହେ ସୁମତ । ଗଡ଼ ଛାଡ଼ିବା ଶୁଣି ନରପତି ।
ବିବେକ ପାତ୍ର ମନ୍ତ୍ରୀ ସରଦାର । ଦଳବେହେରା ଯେ ଉତ୍ତମ ନର ।
ସବୁହିଁ ହକାର । ବୋଇଲେ କହ କହ ହେ ବିଗ୍ଭର । ୧ ।
କାହା ମନକୁ ଆସୁଛ କେମନ୍ତ । କେଉଁ ବିଗ୍ଭର କରିବା ନିଶ୍ଚିତ ।
ଲଢ଼ିବା କି ଅବା ଛାଡ଼ିବା ଗଡ଼ । ଦୁଇ କଥାରୁ କେ ବିଗ୍ଭର ବଡ଼ ।
ଶୁଣି ଏ ବଚନ । କହନ୍ତ କେହ୍ନ ଶୁଣିମା ରାଜନ । ୨ ।
ଗୋସାଇଁଙ୍କ ମୁଦ୍ଦ ସୁକୃତବଳ । ଅଖଣ୍ଡ ହୋଇ ଥିବାରୁ ପ୍ରବଳ ।
ମନେ ନ ଥିବା କଥାମାନ ହୋଇ । ବଇଶ୍ୱ ଶିରେ ଚଢ଼ିକ ପଡ଼ଇ ।
ଏବେ ଯା ହୋଇଲ୍ । କାହା ମନରେ କ ପରତେ ଥିଲ । ୩ ।

ଯେଉଁ ଲଙ୍କାଇ ହେଲା ନୃପମଣି । ଯେଣ୍ଣଲେ ଛାଡି ହୋଇଯାଏ ପାଣି
ସିନ୍ଧୁକୁ ବାନ୍ଧ ରଖିଛ ଅଟଙ୍କ । କାହା ବେଳେ ଏ କର୍ମ ହୋଏ ନାହିଁ ।
ଯା ନାଗସ୍ୱାଘାତେ । ଡରେ ଥରହର ନୃପଛ ଯେତେ । ୪ ।
ଅଠରଦନ ଏବେ ହେଲା ସେହୁ । ଯଶ ତ ଫିଟି ଗଲଣି ଗୋସାଇଁ ।
ଅଠର ହେଲେଣି ଲଢ଼ିବା ନର । ଗଡ଼ ଭିତରୁ ହୋଇବା ଅନ୍ତର ।
ଶୁଣି ନରସାଇଁ । ଅଛା ବୋଲି ପୁଣ ଆରକୁ ଗୃହିଁ । ୫ ।
ସେ ହାତଯୋଡ଼ ବୋଲେ ନୃପମଣି । ଶାସ୍ତ୍ରମାନଙ୍କେ ଏହା ଅଛ ଶୁଣି ।
ଯେ ଯାହାକୁ ବଳେ ବଳେ ଅବର । ତା ସଙ୍ଗେ ଅପ୍ରୀତ ନୁହେ ବଗୃର
ଯେବେ ହୋଏ ଦ୍ୱନ୍ଦ୍ୱ । ପ୍ରୀତି କଲେ ପୁଣ ହୋଏ ଅନନ୍ଦ । ୬ ।
ହଉ ବୋଲି ପୁଣ କାହାକୁ ଗୃହିଁ । ସେହୁ ପୁଣି ହାତଯୋଡ଼ ଜଣାଇ ।
ଏକ ଚରିତ ସର୍ବଦା ନ ରହେ । ଅଲୋକେ ଯଥା ଅନ୍ଧକାର ଦହେ ।
କେତେବେଳେ ଯଶ । ହୁଅଇ କେତେବେଳେ ଅପଯଶ । ୭ ।
ଅଠରଦନେ ନାହିଁ ଅପଜୟେ । ସଂସାରେ ପ୍ରଶଂସା କଲେ ସଭିଏ ।
ଅଉ କ କଥା କହିବ ଗୋସାଇଁ । ଯେମନ୍ତ ଅବଧାନକୁ ଆସଇ ।
ଶୁଣି ବଚନକୁ । ଗଭି ହାଲଇ କହନ୍ତି ଆନକୁ । ୮ ।
ସେ ବୋଇଲା ଯେଉଁ ଜୟ ହୋଇଲା । ତାହିଁକ କାରଣ ପ୍ରଭୁଙ୍କୁ ହେଲା ।
ମାଇଲଇଁ ଏବେ ମାରିବା ପୁଣି । ଏଥକୁ ଢଳେ ଭୟ ନାହିଁ ଜାଣି ।
ଭଲ ଭଲ ଏବେ । କରନ୍ତୁ ଅଉ ସେ ଯାହା କରିବେ । ୯ ।
କନସ ଦାନା ଅମ୍ଭର ନ ଥାନ୍ତା । ବାରୁଦ ଗୁଳି ଅବା ସରିଥାନ୍ତା ।
ତେବେ ବା ହୁଅନ୍ତା ଅମ୍ଭ ଓହର । ବଶ୍ୱେ ନ ଜାଣ କେବଣ ବଗୃର
ଶୁଣି ଏହୁ ବାଣୀ । ବୋଇଲେ ଅଉ କେହୁ କହ ପୁଣି । ୧୦ ।
ଶୁଣି କେ ବୋଲେ ସୀଉକାର କର । ପୃଥ୍ୱୀ ଥିଲେ ହୋଏ ଯାହା ବଗୃର
ସେ ଭଙ୍ଗିଗଲେ କହୁ କର ନୋହୁ । ପ୍ରଜା ଏ ଥିଲେ ରଜା ଠେକ ରହୁ
ସେ ହେଲଣି ଦହୁ । ଲକ୍ଷ ଲକ୍ଷ ଘୋଡ଼ା ଅଛନ୍ତି ରହୁ । ୧୧ ।

ଅଛୁ ବୋଲି କାହା ମୁଖ ତକାନ୍ତେ । ସେ ବୋଲେ ବଗୁରଛି ଏହିମତେ
ଗଡ଼ ଛାଡ଼ ଦନେ ହେବା ଅନ୍ତର । ଏତେକେ ଲେଉଟିଯିବେ ଲସ୍କର
ମୂଲକ ରହିବ । ଯେମନ୍ତେ ଦବ୍ୟ ଶତ୍ରୁକୁ ଅସିବ । ୧୨ ।
ଶୁଣି କହନ୍ତି ତହିଁ ନରସାଇଁ । ଏତେ କଥା କପିଁ। କହ ଘୋଡ଼ାଇ ।
ସମସ୍ତେ କହୁଛ ପଳାଇ ଯିବା । କେହି ତ କହିଲ ନାହିଁ ରହିବା ।
ମୁଁ ନ ଯିବ ଛାଡ଼ । ଭଲ କେମନ୍ତେ ମୋତେ ଦେବ ତଡ଼ ।୧୩।
ହତଅର ବାନ୍ଧଥିବା ଲୋକର । ମରିବାକୁ ଯେବେ ହୋଇବ ଡର ।
ହତଅର ଛାଡ଼ ଖେତ କମାଉ । ତେବେ ତାହାକୁ କ କହିବା ଅଉ ।
କପଟ ଖାଇବା । କ୍ଷତ୍ରିଙ୍କ ଶୋଭି ରଣେ ପ୍ରାଣ ଦେବା ।୧୪।
ଭୀମ ଅର୍ଜୁନ ଦ୍ରୋଣ କର୍ଣ୍ଣ ବୀର । କାହିଁ ଅଛନ୍ତି ସେନ ଶରୀର ।
ଯଶହିଁ ମାତ୍ର ଯାଇଅଛି ରହି । ନାମରଦକୁ କେ ତୁଣ୍ଡେ ବସାଇ ।
ଏହା ନ ଦେଖିଲ । ଗଡ଼ ଛାଡ଼ ଛାଡ଼ ସମସ୍ତେ ବୋଲ ।୧୫।
କାହାର ପୃଥ୍ୱୀ କେ ସଙ୍ଗରେ ନେବ । ଯଶ ଅପଯଶ ଦୁଇ ରହିବ ।
ଯେତେ ରାଜା ଗଲେ ପୃଥ୍ୱୀ ନ ଯାଇ । ଦୁଇ କଥାରେ ନାମ ରହିଥାଇ
ଦାତା ଶୂରପଣ । ଏ ଦୁଇ ବିନା ନାମ ନୋହେ ଜାଣ ।୧୬।
ଦେଖ ହୋଇଅଛି କେତେ ମଉଜ । ଲଢ଼ି ରଖିଥାଇ କେତେ ଫଉଜ ।
କମର ବାନ୍ଧଥାଇ ଦନ ରାତ । ଏଥୁଁ କ ବଡ଼ ବାସବସମ୍ପତ୍ତି ।
ଛାତ ଉଠେ ଫୁଲ । କେମନ୍ତେ ବୋଲ ଗଡ଼ ଛାଡ଼ ବୋଲ ।୧୭।
ଫଉଜ ଭିତରେ ଘୋଡ଼ା ପକାଇ । ମାରେ ବରଛା ନିରଭୟ ହୋଇ ।
ସତୀ ପରାୟେ ପଶି ଝାସିଯିବ । ଫେରି ଅଇଲେ ଦେ ସକଳ ଭୁଞ୍ଜିବ ।
ନୋହିଲେ ସେ ମଲେ । ବାସବ ସଙ୍ଗେ ସେ ବସିବ ଭଲେ ।୧୮।
ହାତ ଉଠାଇ ଯେ ମରିବ ବୀର । ତାହାକୁ ମାତ୍ର ସେହି ପଠାନ୍ତର ।
ରଣେ ଯା ଦେହ ହୋଏ ଛିନ୍ନ ଭିନ୍ନ । ତାହାର ଅଟଇ ସୁଫଳ ଜନ୍ମ ।
ଯେ କପଟ ହୋଏ । ପୁରୁଷ ହେଲେ ସେ ଯୁବତୀ ପ୍ରାୟେ ।୧୯।

ବୋଲ ଅଙ୍ଗରେ କର୍ପୂର ଚନ୍ଦନ । ମଣ୍ଡି ହୋଇଥିବ ହେମ ରତନ ।
ଘରେ ଥିବ ଶଚୀପତି ସମ୍ପତ୍ତି । ରକତ ଦେଖି ଦୁଲ୍ଲକେ ଯା ଛତି ।
ସେ ମନୁଷ୍ୟ ସ୍ଥାନ । କ୍ଳେଶ ନୋହେ ତାର ସ୍ୱର୍ଗ ସମାନ ।୨୦।
କାହିଁକି କାଣ୍ଡା ବଳେ ଏଥି ଥିବା । ଗୃହ ଛାଡ଼ି ଖଣ୍ଡା ହୋଇ ପଶିବା ।
ହରିବୋଲ ଝାସୁଁ ଯେ ହେବ ହେଉ । ଏତେ ବିଗୃହରେ କଫଳ ଅଛୁ
ଏହୁ କଥା ମୂଳ । କେ ସହିବ ବରଗିଙ୍କ ଜଞ୍ଜାଳ । ୨୧ ।
ଲେଡ଼ର ଘୂଡ଼ କହୁଣିକି ଗଲେ । କେମନ୍ତ ଘଟଣା ହୁଅଇ ଭଲେ ।
କର ଯାରେଣି ଗୁଣ ଗଲେ ଛଡ଼ । ହାତକୁ ଅଯଇ କା ଯେବେ ଲୋଡ଼ ।
ବରଗି କପଟ । ଜାଣିନାହିଁ ତାଙ୍କ ହୃଦର ନଟ । ୨୨ ।
ତାଙ୍କ ଭୂଷାରେ ଗଡ଼ ଛାଡ଼ ଯିବା । ଗୈରଙ୍କ ପରି ଅରଣ୍ୟେ ବୁଲିବା ।
ତହିଁ ଉତ୍ତାରୁ ଗଡ଼ କରି ଫତେ । ବୋଲିବେ ଟଙ୍କା ବୁଝିଦିଅ ମୋତେ
ତେତେବେଳେ ଯାଇଁ । କି ବୁଦ୍ଧି ଏହା ନ କହ କପାଇଁ ।୨୩।
ପଞ୍ଚ ଅନ୍ଧ ତ ବାଲ ହୋଇ ଥିବ । ସେ ପୁଣି ହାତ ଗୁଣ୍ଡାରେ ପଶିବ ।
ତେତେବେଳେ ମନେ ପଡ଼ିବ ସିନା । ଯେହେବ ଏତେବେଳେ ହେଉ କନା
ନ ଛାଡ଼ିବା କାଣ୍ଡା । କଥା ତ ରହିଯିବ ଭଲ ଭଲ । ୨୪ ।
ଏମନ୍ତ କହି କୋପେ ଗୁରୁତର । ମୁଛୁଗୃକୁ ତହିଁ ଦେଲେ ଖବର ।
କାହାର କହିବା ଯୋଗ୍ୟତା ନୋହେ । ନବର୍ତ୍ତି ରହିଲେ ପାଞ୍ଚ ମନ୍ତ୍ରୀ ଏ
ଟେକେ କହିଲେ ହେଉ । ସବୁ ଦନେ ତ ନ ଖାଇବା ଅଉ ।୨୫।
ନଗରବଗେ ଏ ଖବର ହେଲା । ରାଜା ସାହେବଙ୍କୁ କେ ବଣା କଲା ।
ନରେନ୍ଦ୍ର ସାହେବ ଶୁଣି ଚକିତ । ଭାଙ୍ଗି କହିବାକୁ ନୋହେ ଶକତ ।
ସକଳେ ବିଷାଦ । ବିଗୃରନ୍ତେ ହେଲା କି ପରମାଦ । ୨୬ ।
ମନ୍ତ୍ରୀମାତଙ୍ଗ ହେଲେ ଅବାରଣ । କାହାବଳେ କି ଧରାଯାଏ ପୁଣ ।
ଆହାରେ ଆଶ୍ୱାସି ଟୋପରେ ଧୀରେ । ଯେମନ୍ତେ ଧରନ୍ତି ନାନା ବାଦ୍ୟରେ
ଏହୁମତି ସିନା । ମନ୍ତ୍ରଣା ଉପାୟ କଲେ ଘଟନା । ୨୭ ।

କଥା ଭଙ୍ଗିରେ ଦେଖାଇ ଜଣାନ୍ତି । ନବକୁ ହେଲ୍ଲ ପର୍ଯ୍ୟେ ସମ୍ପତି ।
ଦ୍ୱିଦନ ଯିବା ଗଡ଼ୁଁ ଦୂର ହୋଇ । ବଗୃର ଏଠାରେ ରହ୍ନ ଗୋସାଇଁ ।
ସେ ନ ଯିବେ ଯେବେ । ମୁଲକ ମାଟି ତ ଖୋଳ ନ ନେବେ ।୨୮।
ଠାବେ ଠାବେ ମିଳ କରିବା ହାଲ । ଦାନା ନ ପାଇ ହେବେ କଲବଲ
ଘାଟ ବାଟ ଖଣ୍ଡି ଜଗିବା ଯହୁଁ । ରସ୍ତା କେମନ୍ତେ ଗୃଲବେଟି ଅଉ ।
ଦବ୍ୟ ଶତ୍ରେ ଯେନ । ଛାଡ଼ିଯିବା ମାନ୍ଦ ଗଡ଼ ଦ୍ୱିଦନ ।୨୯।
ସାତ କଥାରେ ଭୁଲେ ପରି ସତୀ । ତେତେବେଳେ କଲେ ରାଜା ସମ୍ପତି
କାହାକୁଟି କେତେ ଲଙ୍ଘିବେ ପୂଣ । ଛାଡ଼ିଗଲେ ଏହିରୂପେ ସେ ଜାଣ ।
କୃଷ୍ଣ ପଦ୍ମପାଦ । ଚିନ୍ତ ବ୍ରଜନାଥ ନାଶେ ବିଷାଦ । ୩୦ ।

---

# ଷଷ୍ଠ ଛାନ୍ଦ

ରାଗ—ଘଣ୍ଟାରବ

ଏବେ ଶୁଣ ଧୀରମତି । ଗଡ଼ୁ ପଳାନ୍ତେ ନୃପତି ।
ଫତେ ବଗୃର ଫଉଜେ ଉଠିଗଲେ ଏଅନ୍ତେ ହେଲ୍ଲ ଯେ ରାତି । ୧ ।
ଯେଉଁ ଯେଉଁ ଖଣ୍ଡାଇତେ । ମିଳ ବରଗି ସଙ୍ଗତେ ।
ଶତ୍ରୁ ହୋଇ ଢେଙ୍କାନାଳେ ଲଢ଼ୁଥିଲେ ବଗୃରନ୍ତ ତହିଁ ଶତ୍ରେ । ୨ ।
ଧନ୍ୟ ଢେଙ୍କାନାଳପତି । ଧନ୍ୟ ତାଙ୍କ ଧୈର୍ଯ୍ୟ ମତି ।
ରାଜା ମହେନ୍ଦ୍ର ବାହାଦୁର ପଦ ତ ଜାଣି ଦେଲେ ଗଜପତି । ୩ ।
ଧନ୍ୟ ଧନ୍ୟ ତାଙ୍କ ପୂଣ୍ୟ । ବଗୃର ତାହାଙ୍କ ଧନ୍ୟ ।
ସାଗରଭିତରେ ପଶି ପାର ହେଲେ ଧନ୍ୟ ଧନ୍ୟ ତାଙ୍କ ଗୁଣ । ୪ ।
ଅମ୍ଭମାନଙ୍କ ବଗୃର । ହେଲ୍ଲ କେଡ଼େ ଅସୁନ୍ଦର ।
ପ୍ରୀତିରେ ଅପ୍ରୀତି କେବଳ କଲ୍ଲଇଁ କାର୍ଯ୍ୟ ନାହିଁ କଡ଼ାକର । ୫ ।
ତାଙ୍କ ସଙ୍ଗତେ ଅଭିବ । କରିବାରେ ନାହିଁ ଲଭ ।
ଯେବେ ଏହିମତି କଲେକ ପୀରତି ମନ୍ତୁ ତେଜ ଆନ ଭବ । ୬ ।

କେ ଦ୍ୱାର ସିଂଠ ପେଶିଲେ । କେହୁ ଅପଣେ ଅସିଲେ ।
କେ ନାନା କଉତୁକ ଶଙ୍କ ଦେଇ ଲୋକ ପେଶି ମାନସ ତୋଷିଲେ । ୭ ।
କେ ଦେଇ ଯୁଦ୍ଧା ଚଢ଼ାଇ । ବମନ ଦେଲେ ଛଡ଼ାଇ ।
ଏହୁରୂପେ ନାନା ପ୍ରୀତରେ ଭାବନା କଲେ ନ ରଖି ବଢ଼ାଇ । ୮ ।
ସମସ୍ତେ କଲେ ପୀରତି । କେନ୍ଦୁଝର ନରପତି ।
କେବଳ ଅପୀରତି କଲ ଦ୍ୱନ୍ଦ୍ୱାଗ୍ନି ଅରମ୍ଭିଲେ ନରପତି । ୯ ।
ରକ୍ଷଣ ଅଉ ନ ଦଶେ । କହନ୍ତ ଯା ସେହୁ ଅସେ ।
ତେମଣା ବାବୁଙ୍କ ଯୁଦ୍ଧ ଦେଖୁ ଦେଖୁ ବଇଶୀ ଯାହା ହେବଲ ସେ ।୧୦।
ସଇନ କଲେ ତିଅର । ସଙ୍ଗେ ଦେଇ ସରଦାର ।
ସୀମାପାଖ ଲଗି ଛପି ସ୍ତତି କରି ଗ୍ରାମମାନ କଲେ ଲୁର । ୧୧ ।
ଶୁଣି ଏହା ମହାସ୍ୱୟେ । ବୋଇଲେ ନୃହ ଅଥୟେ ।
ତାଙ୍କର ଅମ୍ଭର ପ୍ରୀତିକି ମାତର ସାକ୍ଷୀ ଅଛଇ ଗୋଟାଏ । ୧୨ ।
ଅଗହୁଁ ଅଭୁର ନୁହ । ଦୁଇ ଗୃହେ ପଟ ସହ ।
ଘଡ଼କେ ତାଙ୍କୁ ମୂଳକୁଁ ଉଡ଼ଦେବା ଛଡ଼ିଯିବ ହବ କୋହ । ୧୩ ।
ଯିବାପାଇଁ କେନ୍ଦୁଝର । କାଣ୍ଡ ଗୁଲନକ କର ।
ଫୋପାଡ଼ ହଳାର ପାଞ୍ଚଶତେ ଆର ଭୁଜ ଯିବ କେନ୍ଦୁଝର । ୧୪ ।
ପୁର୍ବରୁ ସେ ଏହା କହ । ଲୋକ ଥିଲେ ଯଠିଅଇ ।
ଦୁଇ ଘୋଡ଼ା ଯେବେ ଦେବାହେବ ତେବେ ତାଙ୍କ ଅମ୍ଭ ସଲଯାଇ ।୧୫।
ଏହା ଓଙ୍କାଲ କହଲ । ତହିଁକି ଏଣୁ ପଡ଼ଲ ।
କାହିଁପାଇଁ ଏହା ନ କହବେ ସେ ତ ଦଇବେ ଅଠନ୍ତ ପିଲ । ୧୬ ।
ଓଙ୍କଲ ଏହା ଶୁଣିଲ । ତାଙ୍କ ରାଜାଙ୍କୁ କହଲ
ଫୋପଡ଼ କଥାହିଁ କ କରୂପେ ଯାଇଁ ପୁଣି ଗୋଚର ହୋଇଲ । ୧୭ ।
ଦଇବେ ନୃପତି ସେ ତ । ଶୁଣି ଏ କଣ୍ଠୁଭୂଷିତ ।
ବୋଇଲେ ମୋ ରାଜ୍ୟ ବୃକ୍ଷୁ ପଛେ ସାଜ ସକଳ ସୈନ୍ୟ ଭୂରତ ।୧୮।

ବନ୍ଧା ଝଙ୍କା ଦଶ ଭାର । ମଇନା କରି ଶୃକର ।
ତେଲଙ୍ଗା ଗାରଦ ଅନେକ ରଖିଲେ ବାଛ ଦ୍ରବ୍ୟ ଅଣ୍ଡୁଆର । ୧୯ ।
କାଣ୍ଡ ଗୁଲା ଦାରୁ ଗୁଳି । ଗୃହଜଳ ବରି କଦଳୀ ।
ତମାଖୁ ଲୁଣ ଆଦ ଅଗ ବଂଶଧପାଳଠାରୁ ଦେଲେ ଗୃଳି । ୨୦ ।
ଲୋକ ଶତ ପାଞ୍ଚ ସାତ । ଅଇଲେ ତାହାଙ୍କ ସଙ୍ଗତ ।
ଗୋଡ଼ୀ ମୂରୁଗୁ ଦେବାପାଇଁ ବେଠିଆ ଆସିଅଛନ୍ତି ବହୁତ । ୨୧ ।
ଅଣ୍ଡୁଆର ଦଶ ବାର । ମିଳିଲେ ଆସି ସେଠାର ।
ଲୁଟିବେ ଲଢ଼ିବେ ମୁଲକ ପୋଡ଼ିବେ କରିଛନ୍ତି ଏ ବିଚାର । ୨୨ ।
ଏହା ରାଜନ ଶୁଣିଲେ । ବ୍ୟବର୍ତ୍ତାଙ୍କୁ ବିଦା କଲେ ।
କଛି ଶୁଆର ଜମାଦାର ଫଉଜ ଯିବାପାଇଁ ଆଜ୍ଞା ଦେଲେ । ୨୩ ।
ପାଞ୍ଚୁ ପାଞ୍ଚୁ ତାଙ୍କ କୁଟ । ଆଗହୁଁ ହୋଇଲେ ଭେଟ ।
ଭେଟଣା ହୋଇଲା ପରି କେତେ ମଲେ ସେ କେତେ ଧନ ହୋଇଲା ଲୁଟ ।
ଜଣ ଜଣକେ ବିଚାର । ମାରି କେ ଆଣିଲେ ଧରି ।
ଏ ଦନ ତମୋଇ ଦୋଡ଼ାରୁ ସିପାହୀ ବେବର୍ତ୍ତା ଆଣିଲେ ମାରି । ୨୫ ।
ଘୋଡ଼ା ହାତିଆର ମୁଣ୍ଡ । ଆଣିଲେ ଜଳ ପ୍ରଚଣ୍ଡ ।
କେତେ ଖଣ୍ଡ ଖଣ୍ଡ ହେଲେ ବାଜ କାଣ୍ଡ ଗୁଳି ଗୋଳାଲା କା ପିଣ୍ଡ । ୨୬ ।
ଲୁଟି ହୋଇଲା ଅନେକ । ତାଙ୍କ ସରଞ୍ଜାମ ଯାକ ।
କବା ଦଓଟ ଗୋଟିଏ ଯାଇଥିବେ ବାର୍ତ୍ତା କହିବାକୁ ଲୋକ । ୨୭ ।
ଏତେକେହେଁ ନ ଚେତିଲେ । ଆପଣେ ରାଜା ଅଇଲେ ।
ପଲାଶୁଣି ଗଡ଼ ଲଢ଼ାଇରେ କେତେ ତେଲଙ୍ଗା ଗିରାଇ ଗଲେ । ୨୮ ।
ପାଇକେ ଅସମ୍ଭ୍ରେ ଛାଡ଼ି । ଗଡ଼ ମାନ ଦେଲେ ପୋଡ଼ି ।
ଯହୁଁ ଯେତେ ଜନ ଆସିଛନ୍ତି ସେ ଯେ ଭାଜିଯାନ୍ତି ଉଠିପଡ଼ି । ୨୯ ।
ପୁଣି ଗଲା କେତେ ଦିନ । ସାଜି ତାଙ୍କ ସବୁ ସୈନ୍ୟ ।
ତମୋଇଠାରେ କଲେ ଯାଇଁ ଲଢ଼ାଇ ତହିଁ ହେଲେ ଯେତେ ହାନ । ୩୦

ଲୋକ ଦରବର ହଜାର । ପଞ୍ଚାଶ ଷାଠି ଶୁଆର ।
ନଗଦ ଗୃକରମାନଙ୍କ ଅପାର ଅଣିଥିଲେ ସଙ୍ଗତର । ୩୧ ।
ଚଳାଇ ଅସନ୍ତେ ତେଣୁ । ଲୋକ ପହୁଞ୍ଚାଇ ଏଣୁ ।
ହାତ ଗୋଡ଼ ଘୋଳ ହେଲ ଏହାଙ୍କର ତାଙ୍କୁ ମିଶି ହାଣୁ ହାଣୁ । ୩୨
ବ୍ୟବର୍ତ୍ତା ସେଦନ ଅସି । ଭିତରେ ଘୋଡ଼ାରେ ଝାସି ।
ମାଗି ତଲୁଆର ଏକ ଅଣୁଅର ଦେଲେ ଯମପୁର ପେଷି । ୩୩ ।
ପଳାଇଲେ ଛଡ଼ ରଣ । ନ ଅଣ୍ଟିଲ ଗିର ବନ ।
କେତେ ଲୋକ ଅବା ଛଡ଼ ହତିଆର ପଳାଇଲେ ଘେନ ପ୍ରାଣ । ୩୪ ।
କେବଳ ତାହାଙ୍କୁ ଏତେ । ଲୋକେ ବୋଇଲେ ଜଗତେ ।
କେନ୍ଦୁଝର ରଜା ଧର୍ମ ଲଙ୍ଘିଲ ହୋ ଯଶ ମିଳବ କେମନ୍ତେ । ୩୫ ।
କେ ବୋଲେ ସେ ଅସୁବୁଦ୍ଧି । କଲେ ଝାଜୁଆଙ୍କ ବଧି ।
ପ୍ରୀତଠାରେ ସେ ଯେ ଅପ୍ରୀତ ହୋଇଲେ କେହ୍ନେ ସହୁବଟି ବଧି ।୩୬
ପରଜା ହେଲେ ଉଚ୍ଛନ୍ନ । ରଜ୍ୟ ହେଲ ଛନ୍ନ ଭିନ୍ନ ।
ବୋଲେ ବ୍ରଜନାଥ ବଡ଼ଜେନା ଏଥୁ କି ଯଶ ହେଲଟି ଘେନ । ୩୭

---

## ସପ୍ତମ ଛାନ୍ଦ

### ରାଗ—କେଦାରକାମୋଦି

ଶୁଣ କହୁବା ପୁଣ ଯେଉଁ ଚରଣ ।
ଗୁଣଗ୍ରାହକ ବିଚକ୍ଷଣ ପଣ୍ଡିତ ହେ ।
ସମରତରଙ୍ଗ ଏ ଗୀତର ନାମ ।
ଯେବା ମନ୍ଦ ଲୋକ ସେହ୍ନ ଘେନମ ହେ । ୧ ।
ରଜା ମହେନ୍ଦ୍ରବାହାଦୁର ଏ ପୁଣ ।
ନାମ ନ ବାକି ପୃଥ୍ୱୀ ଅଛ କି ଘେନ ହେ ।

ସମରେ ଗଣି ବୀର ଅର୍ଜ୍ଜୁନ ସଙ୍ଗେ ।
ଭୀମ ସଙ୍ଗତେ ବଳବନ୍ତ ସେ ଅଙ୍ଗେ ହେ । ୨ ।
ମନ୍ଦରଗିରି ପରି ଅଟଳ କଣ୍ଠଳ ।
ଚନ୍ଦ୍ରର କଳା ପ୍ରାୟ ଶାନ୍ତ ଶୀତଳ ହେ ।
ଶୋଭାରେ ଜାତ କିବା ନବୀନ କାମ ।
ପ୍ରଭାରେ ଚଣ୍ଡକର ତେଜ ସମାନ ହେ । ୩ ।
ଦାନରେ ବଳି ରାଜା ଉପମା ଦେଇ ।
ମାନରେ ପର୍ଶୁରାମ ପରାୟେ ହୋଇ ହେ ।
ସ୍ନେହରେ ଲବଣୀରୁ ଅତି କୋମଳ ।
କ୍ରୋଧରେ କି ଅବା ଜଳନ୍ତା ଅନଳ ହେ । ୪ ।
ଇତରେ କଳ୍ପଲତା ପରାୟେ ପୁଣି ।
ଶାକର ପ୍ରାୟ ସ୍ୱାଦୁ ଯାହାଙ୍କ ବାଣୀ ହେ ।
ଠକ ଠାପୁଅଲ୍ଲେକମାନଙ୍କ କାଳ ।
ସାରକରନ୍ତି ଯେହୁ ହୋଏ ପ୍ରବଳ ହେ । ୫ ।
ସହବାପଣରେ ସେ ମହା ସଦ୍ଗୁଣ ।
ଗୃହିଁବା ମାନଙ୍କେ କେ ନୋହିବ ବଶ ହେ ।
କହିବା କଥା ଯାର ମଦ ମାଦକ ।
ବହିବା ମନ ଦୁଃଖକୁ ସେ ବିବେକ ହେ । ୬ ।
ଇଙ୍ଗିତ କରନ୍ତି ଯା ନୟନେ ପୂର ।
ସଙ୍ଗୀତ ଗୀତରଙ୍ଗେ ଅତି ଚତୁର ହେ ।
ଭଙ୍ଗିତ ସେହି ଠାରେ ଅଛି କେବଳ ।
ଇଙ୍ଗିତ ଭଙ୍ଗି ଦ୍ୟନ୍ତ ବଇରାକୁଳ ହେ । ୭ ।
ପଞ୍ଚ କଲେ ମୂଲକଯାକହିଁ ନଦେବେ ।
ଶକ୍ୟ କେହି କଢ଼ାଏ ନେବ ଅର୍ଥବେ ହେ ।

ଅଷ ଚାଳନ୍ତି କୃପା କରି ଯାଠାରେ ।
ଲକ୍ଷ ଲକ୍ଷ ସେ ସୁଖ ପାଇ ବଢ଼ିରେ ହେ । ୮ ।
କୋପରେ ପରିପୂର୍ଣ୍ଣ ହୋଇ ସେ ନେତ୍ର ।
ଯା ପରେ ପଡ଼େ ବୁଡ଼ିଯାଏ ତା ଗୋତ୍ର ହେ ।
ତା ପରେ ଅବଶ୍ୟହିଁ ଦୟା ବହନ୍ତି ।
ଭୂପରେ ନାହିଁ ଏ ସମାନେ ଭୂପତି ହେ । ୯ ।
ଏହୁ ପ୍ରଭୁଙ୍କ ଅଠ ପୁରୁଷ ଲୋକ ।
ମୁହିଁ ଅଛଇ ଏହା ଜାଣନ୍ତି ଲୋକ ହେ ।
କାହିଁ ଏ ବନା ଅଭ୍ର ଗଢ ନ ଥାଏ ।
ମହୀମଣ୍ଡଳେ ଜଳ ଗୃତକ ପ୍ରାୟେ ହେ । ୧୦ ।
ସେବନଥିବାରୁ ପ୍ରଭୁମାନଙ୍କୁ ତୋଷେ ।
ମୁକମ କାର୍ଯ୍ୟ କରୁଥାଇ ପୌରୁଷେ ହେ ।
ଅହର୍ନିଶିରେ କର ଅନୁସରଣ ।
ଛମୁ ସଂସର୍ଗେ ସେବନ ହୋଇଲ ଗୁଣ ହେ । ୧୧ ।
ଅଗ୍ରଜ ଗୋପୀନାଥ ପଟ୍ଟନାୟକ ।
ଗୁଣବନ୍ତରେ ତାଙ୍କୁ ଗଣନ୍ତି ଲୋକ ହେ ।
ତାଙ୍କ ସମୟ ଗଲ ସଦାଚରଣେ ।
ଅନ୍ତେ ପଶିଲେ ସଦାନନ୍ଦ ଚରଣେ ହେ । ୧୨ ।
ତାଙ୍କ ଅନୁଜ ଜଗନ୍ନାଥ ଯେ ନାମ ।
ଗୁଣବନ୍ତେ ଯେ ରାଜକାର୍ଯ୍ୟକୁ ଯମ ହେ ।
କବିଭୂଷଣ ପଟ୍ଟନାୟକ ପଦ ।
ଏଥୁଁ କବିତା ଶକ୍ତି ଜାଣ କୋବିଦ ହେ । ୧୩ ।
ଗୁଣବନ୍ତେ ତ ମୁହିଁ ଜଣା ନ ଯାଇ ।
ସତେହେଁ ତେତେ ଶକ୍ତି ମୋହର କାହିଁ ହେ ।

ତଥାପି ଗୁଣଗଣ ଅନୁସରଣେ ।
କବତା କରିଥାଇ ପଦେ ଚରଣେ ହେ । ୧୪ ।
କେଉଁ ଗୀତ ସଦୋଷ କେହ୍ନ ନିର୍ଦ୍ଦୋଷ ।
କେ ରସପୂର କେବା ହୋଏ ନୀରସ ହେ ।
କେ ଗୁରୁସ୍ଥାନେ ଲଘୁ କେ ଲଘୁ ଗୁରୁ ।
କେ ବର୍ଣ୍ଣ ଅଯୁକ୍ତହିଁ କେ ପୂଣ ଗୁରୁ ହେ । ୧୫ ।
ରାଜା ମହୀନ୍ଦ୍ର ବାହାଦୁରଙ୍କ ସଭା ।
ତୁଳକପଠ ପ୍ରାୟେ ଅଛଇ ଶୋଭା ହେ ।
ଅରକତରଜତ କୁନ୍ଦନ ସୁନା ।
ଭେଟି ରତନମାନ ସକଳ ଚାକ୍ଷା ହେ । ୧୬ ।
ତହିଁ ତଉଲ କଷ ହୋଇଲା ଗୁଣ ।
ନିର୍ଦ୍ଦୋଷେ ଜଗତେ ସେ ହେଲେ ଭୂଷଣ ହେ ।
ଏ ସଭାରେ ସଜ୍ଜିତ ଥିବାରୁ ମୁହିଁ ।
ଗୀତ କବତା ବୋଲି କବି ବୋଲାଇ ହେ । ୧୭ ।
ସଂସ୍କୃତ ପରାକୃତ ଖୋରଠା ବୋଲି ।
ନାନା ଭାଷାରେ ଗୀତ କବତା କଲି ହେ ।
ବବଧ ଚଉପଦୀ ଚଉତିଶାହିଁ ।
ବୋଲି ଛାନ୍ଦ ପ୍ରବନ୍ଧ ବୋଲିଛି ମୁହିଁ ହେ । ୧୮ ।
ସକାର ଛାନ୍ଦ ମାତ୍ରା ବୃତ୍ତ ଚୂର୍ଣ୍ଣକ ।
କଥାବର୍ଣ୍ଣନା ନାନାଦ କଉତୁକ ହେ । ୧୯ ।
ତଗ ତମାଳ ମାନ ଗୃଳକ ଗୀତ ।
ବ୍ରଜମୋହନ କେଳିଯୁକ୍ତ କବତ୍ୱ ହେ । ୧୯ ।
ତନ୍ତ କଲମେ ପୁଣ କରିଛି ଶ୍ରମ ।
ତାଳପତ୍ରେ କାଗଜେ ଅକ୍ଷର କମ ହେ ।

ରୂପ ଶକରେ ନାନା ପଠ ପୁସ୍ତକ ।
ଲେଖା ଦେଖି ଆନନ୍ଦ ହୁଅନ୍ତି ଲୋକ ହେ । ୨୦ ।
ଯେହୁ ଅବା ମୋହର ହୋଇଲା ଗୁଣ ।
ତାହିଁକି ମାନ ସିନା ପ୍ରଭୁ କାରଣ ହେ ।
କରିବ ମୁହିଁ ଅବା କେଉଁ ପ୍ରଶଂସା ।
ଫସାରେ ଖୋଜିଲେ ତ ନ ମିଳେ ଭାଷା ହେ । ୨୧ ।
କବିମାନେ ମିଛେହେଁ ଗୀତ ବୋଲନ୍ତି ।
କାର୍ଯ୍ୟ ଲଭିବାକୁ କେ ସ୍ତୁତି କରନ୍ତି ହେ ।
ଶ୍ରୀଛାମୁ କଥା ମୋର ନୋହେ ଏମନ୍ତ ।
ଅନ୍ତର୍ଯ୍ୟାମୀ ଜାଣନ୍ତି ମୋହର ଚିତ୍ତ ହେ । ୨୨ ।
ଘନ ନାଦ ଶୁଣିଲେ ଯେସନ୍ତେ ମୟୂର ।
ଆନନ୍ଦେ ନୃତ୍ୟ କରେ ହୋଇ ଅଥିର ହେ ।
ସେରୂପେ ଛାମୁ କାର୍ଯ୍ୟେ ଲୋଭି ମୋ ମନ ।
କଷ୍ଟେ କହୁଛୁ ନୋହେ ମିଥ୍ୟା ବଚନ ହେ । ୨୩ ।
ବହୁତ ରାଜ୍ୟମାନ ଦେଖିଛୁ ମୁହିଁ ।
କେତେ ରାଜାମାନଙ୍କୁ ଭେଟିଛୁ ମୁହିଁ ହେ ।
ଅନେକ ରୂପେ ମୋତେ କଲେନ୍ତି ଦାନ ।
ତଥାପି ସେ କି ମୋର ପ୍ରଭୁ ସମାନ ହେ । ୨୪ ।
କେଉଁ ରାଜା ସୁନ୍ଦର ନ ଥାଇ ଗୁଣ ।
ଯେ ଗୁଣ ଥିଲେ ନୋହୁଥାନ୍ତି ଘଟଣ ହେ ।
କେ ସୁନ୍ଦର ହେଲେହେଁ ନୁହନ୍ତି ଶୂର ।
କେ ଶୂର ହେଲେ ଯୁଝିବାକୁ ଅଧୀର ହେ । ୨୫ ।
ବୁଝି ପାରନ୍ତି ଯେବେ ଅମଳ ବଣ ।
କେ ଅବା ଦାତା ହେଲେ ତାଙ୍କର କ୍ଲେଶ ହେ ।

କେ ଧନବନ୍ତ ହେଠ ନୁହେ ତାଙ୍କର ।
କେ ନାଗବଶେ ପଶିଥାନ୍ତି ଭିତର ହେ । ୨୬ ।
କହନ୍ତି ଯାହା କେ ତା କରନ୍ତି ନାହିଁ ।
କେ ସତ କହେ ଗୁଣେ ସତ ନ ପାଇ ହେ ।
କେ ପୂର୍ଣ ଯେ଼ନଲେ ତା ପାହ ପ୍ରବଳ ।
ଦୁଇଣ ଦେଲେ ଶଏ କରଇ ମୂଳ ହେ । ୨୭ ।
ଅମଳ ବଶ କେହୁ ନାଗରେ ବଶ ।
ଅନ୍ଧାରେ ବଶ କେହୁ ନିଦ୍ରା ଅବେଶ ହେ ।
କେ ପାହେଁ ବଶ କେ ବଶ  କୁଲୋକରେ ।
କେ ଖେଳବଶ କେହୁ ଗୀତ ନାଟରେ ହେ । ୨୮ ।
କଲ୍ପ ସକଳ ଗୁଣ ଗଣ ମନ୍ଦର ।
ସିନ୍ଧୁ ପରଏ ଯାର ହୃଦ ଗମ୍ଭୀର ହେ ।
ମାରିବା ତାରିବାର ଏ ଗୁଣ ଦୁଇ ।
ନେନେ ଥୋଇ ଗଢ଼ିଲି ପଦ୍ମପରାଇ ହେ । ୨୯ ।
ପୀୟୂଷ ବଷଯୋଗେ ହାସକୁ ଦେଇ ।
ଅଧର ଅରୁଣକୁ ଧାତା ରଚିଲା ହେ ।
ଅନେକ ଗୁଣେ ନିର୍ମିଣିଲା ଶ୍ରୀକର ।
ବଇଷ୍ଣ କାଳ ହୁଅ ଦେଲା ଏ ବର ହେ । ୩୦ ।
ପୁଣି ତହିଁରେ ତାଳ ଖଣ୍ଡାକୁ ଦେଇ ।
କହିଲା ଛନ୍ଦିକୁଳ ପକାଅ ଦହି ହେ ।
ପୁଣି କହିଲା କୃଷ୍ଣପାନ୍ଦକୁ ଦେନି ।
ଦ୍ୱିଜକୁଳକୁ ଦାନ କର ମେଦନୀ ହେ । ୩୧ ।
ପୁଣି ବୋଇଲା ବଜ୍ର ପରାସ୍ତେ ହୋଇ ।
ଦେବ ପ୍ରବଳ ମାଲବଳକୁ ଦହି ହେ ।

ପୁଣି କହନ୍ତି ହୋଇ ଚମ୍ପକମାଳା ।
ମୋହର ନାଗ ମଣ୍ଡି ପଦ୍ମିନୀ ଗଲା ହେ । ୩୨ ।
ପୁଣି ବୋଇଲା ଧନୁଶରକୁ ଧର ।
ଯେଉଁ ରାଜ୍ୟକୁ ଯିବ ନେବ ତା ମାର ହେ ।
ପୁଣି ବୋଇଲା ଧର ବାଗ ବରଛା ।
ଛଣି ନେବ ତୁମ୍ଭର ଯାହାକୁ ଇଚ୍ଛା ହେ । ୩୩ ।
ପୁଣି ବୋଲେ ଧଇଲେ ପତ୍ର ଲେଖନ ।
କୋଟି କୋଟି ସମ୍ପଦ ହେବ ଅର୍ଜ୍ଜନ ହେ ।
ପୁଣି ବୋଇଲା ଯାହା ଶିରେ ଲାଗିବ ।
ତାକୁ ସମ୍ମୁଖ ହେବ ମୁହିଁ ଦଇବ ହେ । ୩୪ ।
ପୁଣି ବୋଇଲେ ଅଉ ଦେବା କି ବର ।
ଯାହା ଚିନ୍ତା କରିବ ସେ କାର୍ଯ୍ୟ କର ହେ ।
ଏବେ ଶୁଣିତେ ଅସୁ ବିବେକ ନରେ ।
ନୃପମଣ୍ଡନ ଦିନେ ହଦଗଡ଼ରେ ହେ । ୩୫ ।
ବିଜୟ କରିଥିଲେ ଶୀଳମଣ୍ଡିରେ ।
ରାଏ ସାହେବ ପୁଣି ଛନ୍ତି ହଜୁରେ ହେ ।
ସୁଯୋଗରେ ନରେନ୍ଦ୍ର ସାହେବ ଛନ୍ତି ।
ମୋଠାରେ ହୋଇଥାନ୍ତି ପ୍ରସନ୍ନମତି ହେ । ୩୬ ।
ବ୍ୟବସ୍ଥା ଭଲ ଭଲ ଲୋକ ସଙ୍ଗରେ ।
ବିକସି ପଟ୍ଟଯୋଷୀ ମହାପାତରେ ହେ ।
ଅଛନ୍ତି ଭୂମେଦାର ସରଦାରହିଁ ।
ସମସ୍ତେ ସୁବେଦାର ଅଛନ୍ତି ତହିଁ ହେ । ୩୭ ।
ଛାମୁକରଣ ନାନା ବିଯୋଗୀ ଲୋକେ ।
ଶିଷ୍ଟ ଲୋକ ଖଟଣି ସବୁ ସେବକେ ଯେ ।

ଅଛନ୍ତି କୁମେଦାନ ସୁବେଦାରହିଁ ।
ସମସ୍ତ ସରଦାରେ ଅଛନ୍ତି ତହିଁ ଯେ । ୩୮ ।

ଏହିକାଳେ ହକୁରେ ଭେଟିଲି ମୁହିଁ ।
ଏ ସମର ତରଙ୍ଗ ଗୀତକୁ ଦେଇ ଯେ ।
ଅଙ୍କ ପ୍ରମାଣେ ପୁଣ ପଢ଼ିଲି ଗୀତ ।
ଜଣାଇଲି ପୁଣି ମୋ ଦୁଃଖ ସମସ୍ତ ଯେ । ୩୯ ।

ମହିମା ମନେ ଏହି ହେଉଛି ମୋର ।
ଶଙ୍କରଙ୍କୁ କହିଲି ସେ ବେଦବର ଯେ ।
ଲକ୍ଷ ଲକ୍ଷ ଲୋକଙ୍କୁ କାଟିବ ପଡ଼ ।
ବରଜନାଥ ବଡ଼ଜେନାକୁ ଛଡ଼ ଯେ । ୪୦ ।

ଏମନ୍ତ ଯେବେ କହେ ନ ଥାନ୍ତି ପୁଣ ।
କରୁଣାସିନ୍ଧୁଙ୍କ ହୃଅନ୍ତି ଦାରୁଣ ଯେ
ପ୍ରଭୁ ହୋଇ ଯେମନ୍ତ ହେବେ ନିଷ୍ଠୁର ।
କହିବାକୁ ଯୋଗ୍ୟତା ଅଛି କାହାର ଯେ । ୪୧ ।

ଏତେ ମାନ ଅଯୁତ ଥିଲି ମୋହର ।
ଭେଟି ଅପଣା ଗୁଣ କଲି ଗୋଚର ଯେ ।
ଏଥର ସବୁ ଦ୍ରବ୍ୟ ଚଢ଼େ ବାହୁର ।
ଦୟା କରିବେ କିବା ହେବେ ନିଷ୍ଠୁର ଯେ । ୪୨ ।

ଏଣିକି ଏହି ଗୀତେ ବର୍ଣ୍ଣିବ ତାହା ।
ଅଛିଅଛି ମୁଁ କରି ବଡ଼ ଉତ୍ସାହା ଯେ ।
ମନରେ କରିଅଛି ଯେତେ କାମନା ।
କେ ଦେଇ ପାରିବ କି ପ୍ରଭୁଙ୍କ ବିନା ଯେ । ୪୩ ।

ଏ ସମର ତରଙ୍ଗ ଗୀତ ପ୍ରସାଦେ ।
ସମ୍ପାଦ ହୋଇବ ମୁଁ ଅଛି ପ୍ରମୋଦେ ଯେ ।
ହେ ମହାରାଜା ଦବ୍ୟ ଶରୀରେ ହେଉ ।
ମୋଠାରେ ଦୟା କର ଜୀଉଛି ରହୁ ଯେ । ୪୪ ।
କୁଳ କୁଳ ଅନେକ ହେଲ ସୁକୃତ ।
ଅନୁସରଣେ ରହିବାକୁ ମୋ ଶକ୍ତି ଯେ ।
ପୁରୁଷାନୁକ୍ରମକୁ ସଙ୍ଗାଳି ହେବ ।
ସଂସାରେ ପ୍ରଭୁଙ୍କର ଯଶ ରହିବ ଯେ । ୪୫ ।
ଏ ଅନ୍ତେ ହେ ସୁଜନେ ନୃପତିଚନ୍ଦ୍ର ।
ତତ୍‌କ୍ଷଣେ କୃପା କଲେ ହୋଇ ପ୍ରମୋଦ ଯେ ।
ଅପଙ୍ଗା ବସେ ବ୍ରାହ୍ମୀନଦୀ ତଟରେ ।
ଗ୍ରାମ ଗୋଟିଏ ନୂଅଗାଁଅ ନାମରେ ଯେ । ୪୬ ।
ପାନ ପିକରେ ଏହୁ ଗ୍ରାମକୁ ଦେଇ ।
ପାଞ୍ଚଶ କାହାଣ ନଗଦ ଖଞ୍ଜାଇଁ ଯେ ।
ହୁକୁମ ଦେଲେ ବଡ଼ ଜେନାଏ ଶୁଣ ।
ଉଚ୍ଛିଷ୍ଟ ପଦାର୍ଥ ତ ନୋହେ ଗ୍ରହଣ ଯେ । ୪୭ ।
ବଂଶାନୁକ୍ରମେ ଗ୍ରାମ ଭୋଗ କରିବ ।
ତୁମ୍ଭ ଥିବାଯାକ ଏ ବର୍ତ୍ତିନ ନେବ ହେ ।
ଏଥିରେ ଯେବେ କାର୍ଯ୍ୟ ହେବ ଅଚଳ ।
ଜଣାଣ କଲେ ଦଣ୍ଡ ହେବ ତତ୍‌କାଳ ଯେ । ୪୮ ।
ଦୁଇଶ ଟଙ୍କା ପାଟବସ୍ତ୍ର ସହିତ ।
ଶୃଙ୍ଗଡ଼ା ଘରୁ ସେକ୍ଷଣି ହେଲା ଦତ୍ତ ଯେ ।
ପ୍ରମୋଦେ ଘେନ ତାହା ମଙ୍ଗୁଳ କର ।
ଗ୍ରାହକରେ ନାହିଁ ଏ ପ୍ରଭୁଙ୍କ ସର ଯେ ।

ନବଘନ ସୁନ୍ଦର ବ୍ରଜକିଶୋର ।
ନବଗୋପଯୁବତୀ ଚିତ୍ତଚକୋର ଯେ ।
ତାଙ୍କ ଶ୍ରୀ ଚରଣରେ ରହିବ ମତି ।
ବ୍ରଜନାଥର ହେଉ ଏ ସଦଗତି ଯେ । ୫୦ ।

---

# ଟୀକା

## ପ୍ରଥମ ଛାନ୍ଦ

କଳାକର, ଚନ୍ଦ୍ରମା । ଅରି, ଶତ୍ରୁ । ସନ୍ତନକମଳକୁଳ, କମଳ ରୂପ ସନ୍ତନକୁଳ । ବରଗୀ, ମରହଟ୍ଟା । ସରବସ୍ୱ, ସ୍ୱଜସ୍ୱ, ଖଜଣା । ଅନାବନାଦ୍,ନାଦ୍ ନ ହେଲେ, ଅର୍ଥାତ୍ କାମରେ ଅସିଲ ନାହିଁ, ଅର୍ଥାତ୍ ବନ୍ଦ ହୋଇଗଲା । ଘୋଷ୍ଟା, ସ୍ୱଗ । ଓକିଲ, ଅନ୍ୟ ଲୋକ ପାଖରୁ ବ୍ୟବହାର ଇତ୍ୟାଦି ସମ୍ବନ୍ଧରେ କଥାବର୍ତ୍ତା କରିବାକୁ ଯାଆନ୍ତି । ଅବନୀ-ପାଳ, ରାଜା (ସଂସାରକୁ ଯେ ପାଳନ କରନ୍ତି) । ଲସ୍କର, ସୈନ୍ୟ । ଇନାମ, ପୁରସ୍କାର । କନାଠ, ତମ୍ବୁର ବାଡ଼ । ମାତଙ୍ଗ, ହସ୍ତୀ । ଦିଗମ୍ବର ବେଶ, ଲଙ୍ଗଳା । ଦହିମାଛ, ଶୁଭକାର୍ଯ୍ୟରେ ସମ୍ବନ୍ଧ ସ୍ଥାପନର ପ୍ରାଥମିକ କାର୍ଯ୍ୟ । ମୁକର, ନିଶ୍ଚୟ । ଧଣ୍ଡା, ପତାକା (ରାଜ ପତାକା) । ଜିନ, ଦେଶୀ ଲୁଗା ତୁଳାରେ ତିଆରି ଜିନ (ଯାହା) ଘୋଡ଼ାର ପିଠି ଉପରେ ପଡ଼େ । ଜିହଣ, ଜିନ ଉପରେ ଯାହା ଭିଡ଼ନ୍ତି । ନାଲମେଖ ଦଉଡ଼ି, ଥୋମଣୀ ଠାରୁ ଜିହଣ ପର୍ଯ୍ୟନ୍ତ ବନ୍ଧା ଯାଇଥିବା ଡୋର । ଗୃଧଦମା, ଜିନ ଉପରେ ଯେଉଁ ଚଦରଟି ପଡ଼େ । କଡ଼ିଆଲ, ବାଗ । ହାଉଦା, ହାତୀ ଉପରେ ବସିବା ପାଇଁ ଗଦି ଉପରେ ଯାହା ପଡ଼େ ।

ଅମାରି, ପାଟହାତୀ ଉପରେ ବିମାନ ସଦୃଶ ଆସନ, ଏହା ଉପରେ ରାଜା ବସନ୍ତି । ଅଙ୍କୁ, ହାଉଦା ଓ ଅମାରି ତଳେ ଯେଉଁ ଗଦି ପଡ଼େ । ଝୋପର, ହାତୀ ମୁଣ୍ଡ ଉପରେ ଯେଉଁ ସଜ୍ଜିତ ଘୋଡ଼ଣୀ ଦିଆଯାଏ । ପଲନ୍ତିଆ, ହାଉଦା ଓ ଅମାରି ଉପରେ ଯେଉଁ ଚଦର ପକାଯାଏ । ସମିଯୁନା, ଶୃଙ୍ଗୁଆ । ନିଶକଟ, ଯେଉଁ ଶଗଡ଼ରେ ଢନୋଟି ଚକ ଲାଗିଥାଏ । ଗୁଣ୍ଡା, ତୋପ ଭିତରେ ଯେଉଁସବୁ ମାରାତ୍ମକ ପଦାର୍ଥ ଭର୍ତ୍ତି ହୋଇଥାଏ । ଜଞ୍ଜାଲ, ଜମ୍ବୁରା, ଦୁଇ ପ୍ରକାର ନଳୀ ବା ବନ୍ଧୁକ । ପେଟକଟା, ସାତହାତ, ବନ୍ଧୁକର ନାମ । ଗଡ଼ନାଳ, ବନ୍ଧୁକର ନାମ । ଟେକ, ବଡ଼ିଅ । ଝଙ୍କମଙ୍କ ଲଗା, ଯେଉଁ ବନ୍ଧୁକରେ ନିଆଁ ଲଗାଇ ଦିଆଯାଏ । ଗାରଦ, ତୋପ ଗୁଳକ । ଢଙ୍କୁଣ, ଝିଟ୍‌କିନ୍ ଭଳି ଗୋଟିଏ ପଦାର୍ଥ, ଏଥିରେ ପଥର ବାନ୍ଧି ଘୁରେଇ ଘୁରେଇ ପିଟି ଦେଲେ ଶହେ ଦୁଇଶହ ହାତ ଦୂରରେ ଲୋକ ଥିଲେ ମଧ୍ୟ ବାଜି ଜଖମ କରିଦିଏ । କାମୁକ, ଶିଅଳ ଲଇରେ ତିଆରି କରାଯାଇ ଥିବା ଦଉଡ଼ିରେ ନିଆଁ ଥାଏ, ଏ ନିଆଁରେ ତୋଡ଼ାଦାର ବନ୍ଧୁକକୁ ଫାଏର କରାଯାଏ । ବେଲଦାନ, ବେଲରେ ବା କାଠରେ ବାରୁଦ ରଖିବା ପାଇଁ ଦାନ ତିଆରି ହୋଇଥାଏ, ବାଣୁଆମାନେ ତାହାକୁ ଅଣ୍ଟାରେ ବାନ୍ଧି ଥାନ୍ତି । ବରକନ୍ଦାଜ, ଯେଉଁମାନେ ବନ୍ଧୁକ ଧରି ଯୁଦ୍ଧ କରନ୍ତି । ଧସା ନାଗରା, ବଡ଼ ନାଗରା, ଏଥିରେ ଜୟଧ୍ୱନି କରାଯାଏ । ଅଗାଡ଼ି, ଆଗରେ ଥିବା ।

## ଦ୍ୱିତୀୟ ଛାନ୍ଦ

ମୁଛକୁ ମୁଛ, ପଞ୍ଝାକୁ ପଞ୍ଝା । ପାଗା, ଘୋଡ଼ାଶାଳ । ସୁଆର, ଯେ ଘୋଡ଼ା ଚଢ଼େ । ଜମାଦାର, କେତେ ଜଣ ସିପାହୀଙ୍କ ଉପରେ ଯେ ହାକମ । ସରଦାର, ଜମାଦାରଙ୍କ ଉପର ହାକମ । ମୁରତପ, ଯାହାର ଯେପରି ମର୍ଯ୍ୟାଦା । ଦୌଲତ, ଜିନିଷ ପତ୍ର । ମଜୁରା, ରାଜାଙ୍କୁ ନମସ୍କାର

କରିବା—୧ ରେ ଭୂମିକୁ ଛୁଇଁ, ୨ ରେ ହୃଦୟକୁ ଛୁଇଁ, ୩ ୟରେ ଶିରରେ ହାତ ଦେଇ ନମସ୍କାର କରିବା । ତାଜି ବାଜି, ତେଜସ୍ୱାନ୍ ଶୀଘ୍ରଗାମୀ ଘୋଡ଼ା । ଅଙ୍ଗା, କୁର୍ତ୍ତା (ଗଛ ଉପରକୁ ତୁଲା ଦିଆଯାଇ ଦୁଇପରସ୍ତ ଶିଲାଇ ହୋଇଥାଏ) । ଇସାରା, ଠାରିବା, ସଙ୍କେତ ଦେବା । ଚାଲ—କଦମ୍ବ, ଭରପଲ୍ଲ, ଦୁଲ୍କି, ସରପଟ, ଏ ଚାରି ଚାଲରେ ଘୋଡ଼ାମାନେ ଚାଲନ୍ତି । ଟାଙ୍ଗଣ, ଶ୍ରେଷ୍ଠ ଅଣ୍ଡିରା ଘୋଡ଼ା । ଅଡ଼, ଅଟକ । ବାଗହାତ, ହାତରେ ଥିବା ଘୋଡ଼ା ମୁଖ ବାଗର ଦଉଡ଼ି ବା ଚମ । ବଣାଲ ଫର, ପାଇକମାନେ ବ୍ୟବହାର କରୁଥିବା କାଠର ଢାଲ । ଦୁକୁଳ, ଶାଢ଼ୀ । ମଞ୍ଜୁଳ, ସୁନ୍ଦର । ମଦଜଳ, ହାତୀମାନଙ୍କର କାନମୂଳରୁ ଯେଉଁ ଝାଳ ବୁହେ । ଅଗ୍ରସୁଣ୍ଢ, ଦଶୁଛ । ପଟ୍ଟଭୂଷଣ, ପଟ୍ଟ ରଙ୍ଗର ଲୁଗା ଏବଂ ଅଳଙ୍କାର ବା ଅଙ୍ଗାଭରଣ । ସାଯୁତା, ପାଞ୍ଜି । ଲକବ, ଚୈପଦାର, ଯେଉଁମାନେ ଘରରେ ଚାବି ଦିଅନ୍ତି । ଧୂମାନ୍ତ, ଧୂଳି ପୂର୍ଣ୍ଣ କରି । ଷାଠିଏ ବାଟି, ଗଡ଼କୁ ଲାଗି ଉତ୍ତର ଓ ପଶ୍ଚିମ ବଲର ନାମ ଷାଠିଏ ବାଟି । ଜଳ, ରାଜଦୁର୍ଗର ଚାରିପାଖରେ ଗୋଟିଏ ନାଳ ହୋଇଥାଏ, ଏଥିରେ ବହୁତ ପାଣି ଥାଏ, ଶତ୍ରୁମାନେ ସହଜରେ ଗଡ଼ ଭିତରେ ପଶି ପାରନ୍ତି ନାହିଁ । ମୁରୁଚା, ଗଡ଼କାନ୍ଥକୁ ଲାଗି ଜଗୁଆଳି ସୈନ୍ୟମାନଙ୍କ ପାଇଁ ନିର୍ମିତ ଘର । ଘଣ୍ଡି, କାନ୍ଥରେ ଖୋଲାହୋଇ ଯେଉଁ ଗୋଲ ଗାତ ହୋଇଥାଏ, କାନ୍ଥକୋରା ମଧ୍ୟ କହନ୍ତି । କାଙ୍ଗୁରା, କାନ୍ଥିରେ ତୋପ ରହିବା ପାଇଁ ସ୍ଥାନ । ଚଣ୍ଡିପ୍ରସାଦ, ଏଢ଼ା ତୋପର ନାମ । ମୁଲକ ମଇଦାନ, ଏକ ତୋପର ନାମ । କୋଣେ-ଧାପ, କୋଣେ ବାଟକୁ ଯାହାର ଗୁଳା ଧାପେ । ମଉଡ଼ା, ମୁହଁ । ସିପା, ତସର ନିର୍ମିତ ନଳ ଉପରେ ଦିଆ ଯାଇଥିବା ମୁଠା । ବାଜନକର, ଘୋଡ଼ା-ସମୂହ । ଧାଉଡ଼ିଆ, ଯେ ଆଗରେ ଦୌଡ଼ି ଯାଏ । ଇଳା, କାନ୍ଥର ଗାତ । ଚକ୍ରୁ, ଚକ୍ରୁଣ ଭିତରେ ଯେଉଁ ପଥର ଖଣ୍ଡ ଦିଆଯାଏ । ବାହାଲ ପଟ,

ବାହା ପଟ । ଦଗବାରଣ ଖୁଣ୍ଟ, ଗଡ଼ ମୁଣ୍ଡରେ ଯେଉଁ ଖୁଣ୍ଟ ଥାଏ, ଏହି ଖୁଣ୍ଟ ଉପରେ ଜଗୁଆଳ ବସି ଶତ୍ରୁମାନଙ୍କର ଗତି ଲକ୍ଷ୍ୟ କରେ । ଦଶମୁକୁଟା, ରାବଣ । ଦୋପର, କାନ୍ଥ କଣମାନଙ୍କରେ ଗୋଟିଏ ଗୋଟିଏ ଦୋମହଲିଆ ଘର ତିଆରି ହୋଇଥାଏ, ଏଠାରେ ରାଜା ବସି ଶତ୍ରୁର ଗତି ଲକ୍ଷ୍ୟ କରନ୍ତି । ଶ୍ୱେତ ଚାମର, ଘୋଡ଼ାମାନଙ୍କର ଶ୍ୱେତ ପଛବାଳ । ବୈରଖ, ସାଧାରଣ ବାନା । ଅଖଡ଼େ, ଅକ୍ଳେଶରେ, ବିନା କାରଣରେ । ଗ୍ରେଲ, କୁକୁଡ଼ା । ପାଡ଼, ନାମରଦ । ଲେଦା ଗୋବର୍ଗ, ଯେଉଁ ଗୋବର୍ଗ ଚଢ଼େଇ ଲଢ଼େଇ କରିପାରେ ନାହିଁ ତାକୁ ନାପସନ୍ଦ କରି ତା ପେଟପାଖରେ ଥିବା ନାଲି ପରକୁ ଉପାଡ଼ ଦେଇ ଛଡ଼ ଦଅନ୍ତି, ଏହି ନାଲି ପରକୁ ପାଟ କହନ୍ତି । ଖାଉନ୍ଦ, ମାଲିକ । ସୁହା, ସହିବା । ଗର୍ଦ୍ଦନ, ବେକ ( ଏଠାରେ ବେକରେ ଧକ୍କା ମାରିବା ) । ସମୁଚ୍ଚ, ସବୁ । ଶିରୋପା, ପାଗ । ଫଡ଼କା, ପାଗ ପଛରେ ଯେଉଁ କନାଖଣ୍ଡିକ ଉଡ଼ୁଥାଏ । ଲଡ଼କା, ଟୋକା । କଡ଼କା, ସାବଧାନ, ଦୃଢ଼ । ହେମନ୍ତ, ସାହସ ।

## ତୃତୀୟ ଛାନ୍ଦ

ଅଗ୍ର, ବାଟ । ନନ୍ଦା ବଳଦ, ପିଠିଆ ବଳଦ । ଅଖନ୍ଦ, ଟାଣି ଧରି, ଲକ୍ଷ୍ୟ କରି । ଦାଗି, ନଳ ଫୁଟାଇବା । ଦୋସ୍ର, ତେଲଙ୍ଗା ଜାତିର ଗୋଟିଏ କୁଳର ନାମ, ଏଠାରେ ତେଲଙ୍ଗା ସୈନ୍ୟମାନଙ୍କୁ ବୁଝାଉଛି । ତଡ଼ତଡ଼, ନଳର ଫୁଟିବା ଶବ୍ଦ । ଲେଛି, ଦାଗି । ଥାନ ମୁହୁରି, ସ୍ଥାନ ମୁଦ୍ରା । ଉଆରେ, ଥରରେ । ସୁମାର, ଗଣନା । ବାଙ୍କୁ, ବଙ୍କା ଛୁରି । ହାଲ, ହାଲହୋଳ । ଘାଉଆ, ଯେଉଁମାନେ ଅଘାତ ପାଇଛନ୍ତି । ବଶୋରୁ, ସ୍ମରଣା କରୁ । ଖୁଦାଇ, ଖୋଦା, ଭଗବାନ । ଡାଲ, ଢାଲ । ଗିରି, ପଡ଼ିବା । ମାଳୁମ୍, ଗଞ୍ଜେଇ ପଡ଼ ଯେଉଁ ଖଜା ତିଆରି ହୋଇଥାଏ । ଝାମ, ଝୋଲ ମାରିଯିବା । ଚୁହାଡ଼, ଅନାର୍ଯ୍ୟ ଜାତି ବିଶେଷ, ଯେମାନେ

ଘର ଓ ଠାଙ୍ଗି (ଫାର୍ସୀ) ନେଇ ଯୁଦ୍ଧ କରନ୍ତି । ଦାଇଦେବେ, ହାଣିଦେବେ, କାଟି ଦେବେ ।

## ଚତୁର୍ଥ ଛାନ୍ଦ

ଲସିଗଲ୍ଲ, ଦବିଗଲ୍ଲ । ଜମ୍ବୁର, ନଳ । ମର, ମଡା, ଶବ । ବାଢ଼ ଗଲ୍ଲବେଳେ, ପୋଖରୀପାଣି ପିବାବେଳେ । ଭୁଲ୍‌ଦୁଅଡ଼, ଶସ୍ତ୍ରବିଶେଷ । ହୃଦ, ଯ୍ୟାରେ, ଜାଣ । ପଲଗ, ସର୍ପ । ହୁକ୍, ଜବରଦସ୍ତ ଲଦ ଦେବା । ଖୁଦାର, ମାଲିକ । ଦ୍ରବାନ କାଳେ, ମରହଟ୍ଟା ମନ୍ତ୍ରୀ । ଅଶ୍ବର, ଅସଦ-ଶ୍ବର । ଦମାକ, ଦମ୍ଭ । ପାତସାରେ, ଯେଉଁଥିରେ ତଲୁଆର ବନ୍ଧାଯାଏ ।

## ପଞ୍ଚମ ଛାନ୍ଦ

ଅଠର, ଅସ୍ଥିର । ଓହର, ହାର । ତକାନ୍ତେ, ଗୃହାନ୍ତେ । ଷେତ ଜମାଜ, ଗୃଷ ଅମଦାନ କରୁ । ସାରେଣି, ଧନୁ । ଫତେ, ଜୟ । ଠୋପ, ହାତୀ ଖେଦା । ଯୁଝା ଚଢ଼ାଇ, ଲଢୁଆ ଚଢ଼େଇ । ଲୁଖେ, ଭଲଥା । ଅସୁଆର, ଘୋଡ଼ା ସବାର । ଅସ୍ବଲୁଦ୍ଧି, ଦୁର୍ବୁଦ୍ଧି । ଚଣ୍ଡକର, ସୂର୍ଯ୍ୟ । ଇତର, ଅନ୍ୟ । ବାରବଚ୍ଛା, ଶସ୍ତ୍ରବିଶେଷ । କୁମେଦାନ, ବଢ଼ଦାଗୀ ।



Printed by C. Misra B. A. at the Naba Bharata Press, Cuttack—1940

# ହିନ୍ଦୁସ୍ଥାନ ଗ୍ରନ୍ଥମାଳାର କେତେଖଣ୍ଡ ବ…

ଶ୍ରୀ ସୂର୍ଯ୍ୟନାରାୟଣ ଦାଶ ବି. ଏ. ଙ୍କ ଲିଖିତ

ଓଡ଼ିଶାର ବନ୍ୟା ଓ ଦୁର୍ଭିକ୍ଷ ... ଟ

ଓଡ଼ିଆ କୃଷକ ଟ

ଓଡ଼ିଶା ଗଢ଼ିବ କାହିଁକି ? ଟ

ଓଡ଼ିଶାର ଶିଳ୍ପ ଓ ବାଣିଜ୍ୟ ଟ

ଆମର ସ୍ୱରାଜ୍ୟ ଟ

କବିତା କୌମୁଦୀ ( ପ୍ରାଚୀନ ଛନ୍ଦ ସଂଗ୍ରହ ) ଟ

ସମର ତରଙ୍ଗ ଟ

ଭାଷାବୋଧ ବ୍ୟାକରଣ ଟ

ପ୍ରକାଶିତ ହେବ

ଓଡ଼ିଆ ସାହିତ୍ୟର ଇତିହାସ ଟ

The Temple of Jagannath Re…

Famous temples of Orissa Re.…

ପ୍ରାପ୍ତିସ୍ଥ…

ସବୁ ବହି ଦୋ…

ଓ

ହିନ୍ଦୁସ୍ଥାନ ସାହିତ…

କଟକ